ପ୍ରତିଭା ଶତପଥୀ

# କହି ନହେଲେ



# କହି ନହେଲେ

(କବିତା ସଂକଳନ)

ପ୍ରତିଭା ଶତପଥୀ

ପ୍ରକାଶକ :
ଅପୂର୍ବା
୪୮, ମଧୁସୂଦନ ନଗର,
ଭୁବନେଶ୍ୱର-୭୫୧ ୦୦୧

ପ୍ରଥମ ସଂସ୍କରଣ : ମାର୍ଚ୍ଚ - ୨୦୦୬

ମୁଦ୍ରଣ : ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଚ୍ଛଦ : କ୍ଷୀରୋଦ ଚନ୍ଦ୍ର ପତି

ମୂଲ୍ୟ : ୭୦ଟଙ୍କା

# KAHI NAHELE

A Collection of Poems by **Pratibha Satpathy**

Publisher :
**Apurba**
48,Madhusudan Nagar,
Bhubaneswar - 751 001

First Edition :
March - 2006

Printed at :
Apurba Off-Set,
Bhubaneswar, Pin-751 001

Cover Design :
Kshirod C. Pati

**Price : Rs.70 /-(Seventy only)**

ନବ ପ୍ରଜନ୍ମର
ଅନ୍ୱେଷା, ଅକ୍ଷର
ମଗ୍ନା ଓ ଆତ୍ମିକା
ମାନଙ୍କ ପାଇଁ...

ଆବାହନ କରିଛି । ସଂସ୍ଥାପନ କରିପାରିଛି କି ? ଛଟପଟ ଲାଗେ । ମୋ' ପାଖେ ସେ ଅଛନ୍ତି ପୁଣି ନାହାନ୍ତି ବୋଧେ । ଭାରି ଅଭିମାନୀ ସେ । ଜଗି ବସନ୍ତି ନାହିଁ କାହାରି ବାଟ । ତାଙ୍କର ନିକଟତର ହେବାପାଇଁ କଠୋର ତପସ୍ୟା ଲୋଡ଼ା । ସମଗ୍ର ସତ୍ତାର ସମର୍ପଣ ସେ ଚାହାନ୍ତି । ତୁମେ ସବୁକିଛିକୁ ଜଳାଂଜଳି ଦେବାକୁ ପ୍ରସ୍ତୁତ ରହ-ତାଙ୍କର ଇଚ୍ଛା । ମୋତେ ଅସ୍ୱୀକାର କରନ୍ତି ନାହିଁ ସେ । ଆଶା କରନ୍ତି ମୋର ଯୋଗ୍ୟତା, ମୋର ନିବିଷ୍ଟତା । ନହେଲେ, ମୁହଁ ଫେରାଇ ନିଅନ୍ତି । ମୋର ଯେ ନିହାତି ଦରକାର ତାଙ୍କୁ, ଜରୁରୀ ଦରକାର ! ଅଥଚ ମୋର ଅକୁଳାଣପଣର ଅନ୍ତ ନାହିଁ । ଆବାହନ ଜାରି ରହିଛି କିନ୍ତୁ - ପ୍ରତୀକ୍ଷା ରହିଛି ସ୍ଥିରାର୍ପିତ । ଅସହାୟତା ପର୍ବତ ପ୍ରମାଣ ।

ସଶ୍ରଦ୍ଧ ଧନ୍ୟବାଦ
ଉଲ୍ଲସିତ ଅଭିମତ / ପତ୍ର / ଆଳାପ ଦ୍ୱାରା ମୋତେ ଅଭିଭୂତ କରିଥିବା ପାଠକ ପାଠିକାଙ୍କୁ ।
'କହି ନହେଲେ' ର ତୁରନ୍ତ ପ୍ରକାଶନ ନିମିତ୍ତ ଜିଦ୍ ଧରିଥିବା କ୍ଷୀରୋଦ ଓ ଲୋପାମୁଦ୍ରାଙ୍କୁ ।

**ପ୍ରତିଭା ଶତପଥୀ**

ମାର୍ଗଶୀର, ୨୦୦୫

## କବିତା କ୍ରମ


| | |
|---|---|
| ପ୍ରସ୍ଥାନ ନାହିଁ | ୭ |
| ଆଜି ଆସ, ଏଇଲେ | ୯ |
| ପରୀ | ୧୧ |
| ମରିଯାଇଛି ବୋଲି... | ୧୪ |
| ଶେଯ ମଝିରେ ସେ | ୧୬ |
| ହଜିଯିବା | ୧୮ |
| କହି ନହେଲେ | ୨୦ |
| ଦିଶି ଯାଉଚ ଯେ ! | ୨୧ |
| କହି ହେଲାନି କିଛି | ୨୨ |
| ନଈବଢ଼ି | ୨୪ |
| ଆଗ୍ରହ | ୨୫ |
| କିରଣ | ୨୭ |
| ଅନୁରାଗ ତୁମର | ୨୮ |
| କ୍ଷଣ ସୁନ୍ଦରୀ | ୩୦ |
| ବସ୍ତ୍ରହରଣ ନୁହେଁ | ୩୨ |
| ସମୁଦ୍ର ରଖିଲା ନାହିଁ | ୩୪ |
| ଅଗ୍ନି-ସମିଧ | ୩୬ |

| | |
|---|---|
| ପ୍ରଳୟ, ସୃଜନ | ୩୭ |
| ମରଣ ଆଗରୁ | ୩୯ |
| ବାଧ୍ୟବାଧକତା | ୪୦ |
| ବିଷ, ଅମୃତ | ୪୧ |
| ସୁନାମୀ | ୪୩ |
| କିଛି ନୁହେଁ | ୪୫ |
| ଦିନଶେଷର ଘର | ୪୭ |
| ଧାନ କିଆରୀ | ୪୯ |
| ଯେ କୌଣସି ପାଣିରେ ନୁହେଁ | ୫୦ |
| ଅମର, ଶୁଦ୍ଧ | ୫୧ |
| ପ୍ରେମିକର ଶବ | ୫୨ |
| କବିତାକୁ ଝୁରି ହେଲେ | ୫୪ |
| ମେଘଦୂତ | ୫୬ |
| ଶ୍ୟାମାଙ୍ଗିନୀ, ତୋତେ ଲେଖୁଚି ( ୧ ) | ୫୮ |
| ରତ୍ନ ତ ରତ୍ନ | ୬୦ |
| ଯିଏ ଅଟକିଗଲେ ବାଟରେ | ୬୨ |
| ପଞ୍ଚପ୍ରିୟଙ୍କୁ | ୬୪ |
| ଡରିଯାଆନ୍ତି ଈଶ୍ୱର | ୬୬ |
| ତାରା | ୬୮ |
| ଶ୍ୟାମାଙ୍ଗିନୀ, ତୋତେ ଲେଖୁଚି ( ୨ ) | ୭୦ |
| ଲେଖା ହେଇନି | ୭୨ |
| ଫେରିଆସିବା | ୭୩ |
| ଜଳୁନାହିଁ, ଲିଭୁନାହିଁ | ୭୪ |
| 'ଫାଗୁ'ରେ ବର୍ଷା | ୭୫ |
| କାଗଜ ଟୁକୁରାଟିଏ | ୭୬ |
| ଗୋଧୂଳି | ୭୭ |
| ଘଟ ଭିତରେ | ୭୯ |
| ଗୁଡ଼ି | ୮୦ |
| ଛି' ଛି' ମୋର ସ୍ଥିତି | ୮୧ |
| ଘୋଡ଼ା | ୮୩ |

# ପ୍ରସ୍ଥାନ ନାହିଁ

ଯିବାବେଳକୁ
କେଡ଼େ ସୁନ୍ଦର ଦିଶୁଚ ତୁମେ !

ଝଡ଼ି ପଡ଼ିଲା ବେଳକୁ
ଆହୁରି ବାସ୍ନାଥାଏ କି
ରଂଗଥାଏ, ତେଜଥାଏ ଆହୁରି !

ଆଖିପତାରୁ କପାଳ ଯାଏ
ଟଣା ହୋଇଥିବା ଗାର
ଝୁଲି ପଡ଼ିଥିବା ଶିରା
ବେକତଳର,
ପଛକୁ ଘୁଞ୍ଚି ଯାଇଥିବା
ଈଷତ୍ ଧୂସର ବାଳ
ଅପ୍ରସ୍ତୁତ
ଲୁଚି ପଡ଼ନ୍ତି ଆଜିକାଲି ।

ବୁଝିଛି
ସନ୍ତାପକୁ ଧରି ଫେରିଯିବାକୁ ହବ
ଶେଷରେ ।

ଶାଳବଣ ମଝିରେ
ହଜିଯାଇଥିବା ମୋର ମୁଦି
ଧମନୀରେ ଥମ୍‌କିଥିବା
କୋଉଜନ୍ମର ଗୀତି
ମୋର ହୋଇ ରହିବ ନାହିଁ ଆଉ ।

ସବାଶେଷ ସ୍ୱପ୍ନର ଳୁଇନିଆଁରେ
ଉଜ୍ୱଳି ଉଠୁଥିବା ଲୁହବୁନ୍ଦାକୁ
ପୋଛି ଦବାକୁ ଗଲେ,
ଯୋଡ଼ି ଦବାକୁ ବସିଲେ
ନଡ଼ିଆ ବାହୁଂଗା ଧାରରେ
କଟି କଟି ଯାଉଥିବା ଜହ୍ନକୁ
ବୁଝିହୁଏ
କେଡ଼େ ବିଅର୍ଥ ଯେ ହାତ ଦି'ଟା ମୋର
କେଜାଣି ଥାଏ, ନଥାଏ !

ଏତେ ପାଖରେ ପ୍ରସ୍ଥାନ
ଚାଲିଯିବାକୁ ହବ,
ଚାହିଁ ଦେଲେ ତୁମକୁ
ଆଖି ଲାଖିଯାଉଚି ଅଥଚ !

ରହ, ଗୋଟେଇ ପକାଏଁ
ହୃଦୟର ଟୁକୁରା ସବୁକୁ,
କ୍ଷୟକ୍ଷତିରେ ଯନ୍ତି ହେଉଥିବା
ପୃଥ୍ୱୀକୁ
ଆଉଁସି ଦିଏ ଟିକିଏ,
ଏ ଡାଳରୁ ସେ ଡାଳ
ଜାଲ ବୁଣିବାରେ ବ୍ୟସ୍ତ
ନିରାସକ୍ତ ବୁଢିଆଣୀ ସାମ୍ନାରେ
ଯୋଡ଼ହାତ ହୁଏଁ
ସଫଳତାକୁ ମୋର
ପଥରରେ ପଜାଏଁ, ରହ,
ଛାଡ଼ିଯିବା ଆଗରୁ
ବଡ଼ପାଟିରେ ମୁଁ
ବହେ କାନ୍ଦି ସାରେଁ ।

❑❑❑

# ଆଜି ଆସ, ଏଇଲେ

ଆସ,
ମୋର ପ୍ରତିଟି ଅବୟବ
ସୋପାନ ହେଉ ତୁମ ପାଦତଳେ,
ଉତ୍କଣ୍ଠା ହେଉ ଅର୍ଘ୍ୟ ।

ଅନ୍ତରର ସ୍ୱଚ୍ଛତାରୁ
ଖିଅ ପରେ ଖିଅ ଓଟାରି
ବୁଣି ରଖିଚି ଲୁଗା ଖଣ୍ଡିକ-
ଢାଙ୍କି ଦେବି ତୁମ ବିପୁଳତାକୁ,
ତୁମପାଇଁ ଝୁରିମରିବାର
ଅନିବାର ମୋର ନିୟତିକୁ
ମୋ ପାଟଛତିକୁ
ମୋ ହଂସ ଗୀତିକୁ
ଲକ୍ଷ୍ୟହୀନ, କର୍କଶ
ଗର୍ଜମାନ ଯେ ପୃଥ୍ୱୀକୁ,
ଆସ, ବର୍ତ୍ତମାନ ଆସ ।

କଥା ଦଉଚି
ମୁଁ ଢାଙ୍କି ପାରିବି ଏତେ ସବୁକୁ ।

ପାରିବି ସତରେ ? ଅଭିଶାପକୁ
ପୋଛି ଦେଇ ପାରିବି
ମୋ ନିଜ ରକ୍ତରେ ?
ପାଣିଫୋଟକାଟି ନାଚି ଉଠିଲେ
ପରିତ୍ୟକ୍ତ କୋଣରେ କୋଉଠି
ଅନାବନା ଫୁଲ
ଟୁପ୍‌କିନା ଫୁଟି ପଡ଼ିଲେ

ଏକୁଟିଆ ତରା
ଗୋଡ଼ ଝୁଲେଇ ବସିଗଲେ
ଗଛ ଡାଳରେ —
ବାହୁରେ କାନ୍ଧରେ ମୋର
କେତେଥର ଆଉଜି ପଡ଼ିଚି ଆକାଶ
ମୁଁ ମରିଯାଇଚି କେଜାଣି କେତେବାର
ପାହାଡ଼ ପରି ଏତେ ବଡ଼ ଲାଜରେ !

ଅସଂଖ୍ୟ ଛୁରୀ
ଧାତୁର, ଶବ୍ଦର, ମିଥ୍ୟାଚାରର-
ପ୍ରସୂତ ଶିଶୁର ରକ୍ତ ସରସର ମୁଣ୍ଡପରି
ବାହାରି ଆସୁଥିବା ସକାଳ
ହେଇଯାଏ ଦି'ଗଡ଼,
ଥରେ ଥରେ
ଛାତିଫଟା କୋହ ଶୁଭେ ତ
ଥରେ ଥରେ
ତାଳ ଲୟ ତେଜି ଉଠେ
ତୁମ ବୀଣାର ସୁନା ତାରରେ ।

ଆଜି ଆସ, ଏଇଲେ-
ମୋ ପାହାନ୍ତି ସ୍ୱପ୍ନରେ
ନିଦ୍ରିତ, ବିନିଦ୍ର ପୋଡ଼ାଜଳା
ବାସ୍ତବତାରେ,
ତୀକ୍ଷ୍ଣ ରୋମାଞ୍ଚରେ
ନିରାଟ ଶୂନ୍ୟରେ
ଅଶବ୍ଦରେ, ଆସ,
ଥରକୁ ଥର
ଲୁହରକ୍ତ ନିଗିଡ଼ି ବୋହିଯାଉ ମୋଠୁଁ
ଛିନ୍‌ଛତର୍ ହେଇଯାଏ ମୁଁ ମେଦିନୀ,
ତୁମ ପଦ୍ମପାଖୁଡ଼ାର ପାଦ ଭାରରେ ।

□□□

# ପରୀ

ସେ ଥିଲା
ସ୍ୱାମୀର ନିତିଦିନିଆ ଲୋଡ଼ା
ବିଛଣା ଚାଦରଟେ, ସଢ଼େ ବା ।

ପିଲାଙ୍କ ଖାଇବା ଟେବୁଲ୍‌ରେ
ତା'ର ଝାଳ ନିଗିଡ଼ା ଦେହ
ପଢ଼ା ଟେବୁଲ୍‌ର ପେନ୍‌ସିଲ ଗାରରେ
ଝାଉଁଳି ପଡୁଥିଲା ସମୟ ।
ଏତିକି ବେଳକୁ
କୁଆଡ଼େ ଥିଲା ପାଗଳ କଳାକାର
ସ୍ଥପତି ସେ, ମୂର୍ତ୍ତି ଗଢ଼ିଲା
ଶବ୍ଦ ପରେ ଶବ୍ଦ ବସାଇ ତିଆରିଲା
ବନିଲା କୋଳିପରି ରଙ୍ଗ
କାମିନୀ ପତ୍ରର ଆଖି
ଫୁଟନ୍ତା ପଦ୍ମ ସମାନ ବାସ୍ନାମୟ ଛାତି
ଲତା ପରି ନହକା ଅଣ୍ଟା
ଫୁଲ ଫଳର
କେତେ କେଜାଣି ସମ୍ଭାର
ଶବ୍ଦରେ ଶବ୍ଦ ଖଞ୍ଜି, ଜିଆଇଁ ଦେଲା-
ମଝିରେ ବସାଇଦେଲା ଶବ୍ଦଟିଏ
'ମୋର, ମୋର' ।

'ମୋର' ବୋଲି ଭାଙ୍ଗି ପଡ଼ିଲା ମୂର୍ତ୍ତିଟି ।
ବିଷାକ୍ତ ଶବ୍ଦଟେ ବୋଧେ ବିଷାକ୍ତ ଶର
କେବଳ ଈଶ୍ୱର ନୁହଁ
ମାରାତ୍ମକ କବଳରେ ତା'ର
ସ୍ଥାବର, ଅସ୍ଥାବର ।

ଛିନ୍ନଭିନ୍ନ ମୂର୍ତ୍ତିର
ରକ୍ତାକ୍ତ ଅବୟବ ଭିତରୁ
କେଉଁ ମନ୍ତ୍ରପାଣି ସିଞ୍ଚି ହେଇ କେଜାଣି
ଉଠି ଆସିଲା ପରୀ
ଡେଣା ତା'ର କମ୍ପ କମ୍ପ
ଶାବକ ପରି ।

କଳ୍ପଲୋକର ରୂପଶ୍ରୀ
ମାଗିଲା, 'ଜାଗା ଦିଅ'
'ଗୃହସ୍ଥ, ସ୍ଥପତି, ବ୍ରହ୍ମଚାରୀ
ମୁଁ ଯେ ପରୀ,
ମନ୍ତ୍ରରେ ସଙ୍ଗୀତରେ, ସୃଜନରେ
ସଜାଇ ଦେବି ତୁମର ଗୃହସ୍ଥଳୀ, ତପଃସ୍ଥଳୀ
ଶିଶୁ ଓଠରେ ଲେଖିଦେବି
ଆଶ୍ଚର୍ଯ୍ୟ ଦରୋଟି
ମତେ ଜାଗା ଦିଅ,
ଆଜୀବନ ଶୂନ୍ୟଚାରୀ ମୁଁ ନୁହଁ
ମୋର ଲୋଡ଼ା ମାଟି- ମାଟି ।'

ଆଖି କାନ ନ ଥିଲା ବୋଧେ କାହାରି
ଆଲୌକିକ ଯେ ଜ୍ୱଳନ୍ତ ଫୁଲଝରି
ସେମାନେ ଭାବିଲେ
ଲଙ୍ଗଳା ନିଆଁ ବୋଲି ।

ଦିନେ ଦିନେ ସେ ପରୀ
ଓହ୍ଲାଏ ମୋ ଛାତରେ, ଅଗଣାରେ
ଛାତିରେ, ଚେତନାରେ
କହିଚାଲେ

'ମୁଁ ରହିପାରନ୍ତି ତୁମଠି
ତୁମେ ହେଇପାରନ୍ତ ଯଦି
ପ୍ରତିଟି ମୁହୂର୍ତ୍ତରେ
ନୂଆକରି ଜୀବନ ଆରମ୍ଭ କଲାଭଳି
ଦୁଃସାହସୀ ।'



# ମରିଯାଇଛି ବୋଲି...

ଭାଙ୍ଗିପଡ଼ିବା, ଛିଣ୍ଡିଯିବା
ଠିକ୍ ମରିବା ପରି
ନିସ୍ତାର ନାହିଁ ତା' ଠୁଁ
ଯେତେ ଯେତେ ଯତ୍ନ କଲେ ବି ।

ଭୁବନେଶ୍ୱରର ଦରଭଂଗା ଦେଉଳବେଢ଼ାରେ
ସଂଧ୍ୟା ଚାଲିଯାଉଛି ଚୁପ୍‌ଚାପ୍
ସତରେ ସେ ଜଣକ ଥିଲାକି ?
'ସେ କେବେ ବି ନଥିଲା, ଯଦି ଆଜି ନାହିଁ'-
ଯେ କଥାର ପ୍ରମାଣ କାହିଁ ?

କେବେ ଈର୍ଷା, କେବେ ଦ୍ୱେଷ, କେବେ ଲୋଭ
କେବେ ବା ସମୟ
ଭାଂଗି ପକାଏ ସବୁକୁ
ସେ ପ୍ରାଣୀ ହେଉ
ବସ୍ତୁ କି ଭାବ ବି ହେଉ ।

ବଉଦଖଣ୍ଡକୁ ଦୁଆରଭାବି ଖୋଲିପକାଏ ଜହ୍ନ
ଝୁଂକି ପଡ଼ି ପଚାରେ
ଗୋଟିଏ ଆଲୋକବର୍ଷରେ ଯେ
କୋଟି କୋଟି ଭାଙ୍ଗିବା, ଛିଡ଼ିବା
କେମିତି ବିଶ୍ୱାସ କରିହେବ ସମୟକୁ ?

ସୂତାଟିକର ବ୍ୟବଧାନ
ନଥିଲା ଯଦି ସେଦିନ
ବିସ୍ତର ଗୋଟେ ମରୁଭୂମି,
ନିଦାରୁଣ ପରିହାସଟେ

ଚରିଗଲା ମଝିରେ
ଜଣେ ଏପାରିରେ
ଆଉଜଣେ ସେପାରିରେ ?

ପିଆଜ ଚୋପା ପରି ପତଳା
ଧୁତ୍ତୁକାଚମ ବୟସର,
ଛୁରୀଭଳି ଶୂନ୍ୟକୁ ଭେଦିଯାଉଥିବା ଚିତ୍କାର
ମଲା ଚଢ଼େଇ ପରି ଝୁଲୁଥିବା ଚିଠିବାକ୍ସ
ବିଷାକ୍ତ ଧୂଆଁଭର୍ତ୍ତି ଟେଲିଫୋନ୍,
ବିବସ୍ତ୍ର ହେବାଠାରୁ ଅଧିକ ଏକ ଲାଜ
ଗୋଟିଏ ଅନ୍ଧାର କୋଠରୀରୁ
ଆଉ ଗୋଟିଏ ଅନ୍ଧାର କୋଠରୀକୁ
ଚାଲି ଯାଉଥିବା ଶବ୍ଦ
ପରାସ୍ତ କରିପକାଏ ମତେ-

ମୁଁ ବିଶ୍ୱାସ କରିପାରେନା
ମରି ଯାଇଛି ବୋଲି ସେ ।

❑❑❑

# ଶେଯ ମଝିରେ ସେ

ହଠାତ୍ ପଶିଆସିଛି
ଶେଯମଝିକୁ ସେ
ମୋ ପାଣିଫୋଟକାର ସ୍ୱପ୍ନ,
ଅଲଗା ରହିହୁଏ ନାହିଁ ଯାହାଠୁଁ
ଏମିତିକି ଆଖିବୁଜି ଦିଏ ମୁଁ
ରାତି ପାହିଯିବାର ଭୟରେ ।

ଆଗରୁ
ସୂର୍ଯ୍ୟଆଡ଼କୁ ମୁହାଁଇଥିବା ଯେ ରାତି
ଲୁଚାଇ ପାରିନଥିଲା ମୋର ବଧୂବେଶକୁ
ଜରି ଓଢ଼ଣୀତଳେ, ଘୋଡ଼ାପିଠିରେ
ବରର ସିଲ୍‌କ୍ ଛାତିରେ
ଝୁଲିଚାଲିବା ମୋର
ପାହାଡ଼ କଡ଼େ କଡ଼େ
ଯୋଉଠି ବଣୁଆଁ ଫୁଲକୁ
କେହି ସିଇଁ ଦେଇଥିଲା ଡାଳରେ ।

ଆଜିକାଲି
ପିଠି କରିଚି ସ୍ୱପ୍ନକୁ ।
ବାସ୍ତବତାର ତାତିରେ
ସିଝିସାରିଚି ଚମ,
ପୋଡ଼ା ତିଅଣ ପରି
ମୋ ବରର ଉଷୁମ ଛାତି
କଟା ସରିଥିବା ଧାନବିଲ ପରି ମୋର ମୁହଁ
ଥୁଣ୍ଟା ଭର୍ତ୍ତି ।

ଆଜି ବି
ଠେଲିଲେ ସୁଦ୍ଧା ଉଠି ଯାଉନି ସେ,
ଅଲଗା କରି ଦେଉଚି
ସହଜ ସଂସାରଠାରୁ ମତେ
ମୋ ମୁକୁଳା କାନ୍ଧରୁ
ଖସିଯାଉଥିବା ଅନ୍ଧାରରେ
ଚମକି ଉଠୁଚି ଛୁରୀ ପରି-
କେବେଠୁଁ କାଟି ପକାଇଚି ସେ
ପ୍ରସ୍ତପ୍ରସ୍ତ ମିଛମାୟା
ତଥାକଥିତ ସତୀପଣିଆ ।

❑❑❑

# ହଜିଯିବା

ତୁମେ ଥିଲ, ଆଉ କିଛି ନଥିଲା ।

ମନ ପାଆନ୍ତାରେ ଥିଲ
ଟେଲିଫୋନ୍ ରିସିଭର୍ ଦେଇ
ବିଜୁଳି ଭଳି ନିର୍ଘାତ ଛୁଟିଯାଇ ମୁଁ
ଛୁଇଁ ପକଉଥିଲି ତୁମକୁ ।
ତୁମଛଡ଼ା କିଛି ନଥିଲା ଆଉ ।

ଫେରିଯିବା ପର ମୁହୂର୍ତ୍ତରୁ ଠିକ୍
ଦେଖା ହେବାର ଉତ୍କଣ୍ଠା
ଘରପୋଡ଼ି ନିଆଁପରି ବଢୁଥିଲା
ନିର୍ଦ୍ଦିଷ୍ଟ ଥିଲା ହୁଏତ
ଦି' ପହର ବା ସଂଧ୍ୟା ଛଅଟା
ସହିହେଉ ନଥିଲା
ତୁମର ଦୂରରେ ଥିବା ।

ଝର୍କା ସେପଟେ ଉଡୁଥିବା
ଜହ୍ନର ଧଳା ଚଦର,
ଜରି ରିବନ୍ ଭିଡ଼ା
ଲମ୍ବବେଣୀ ନଈର,
ଅଚିହ୍ନା ପାଦଶବ୍ଦପରି
ଜଂଗଲର ବର୍ଷା ଟୋପା,
ସଂଜସକାଳ
ଆବେଗରେ ଲାଲ୍‌ପଡ଼ିଯାଉଥିବା
ପାହାଡ଼ ଗୁମ୍ଫା,
କେତେ ନାହିଁ କେତେ ଦୂର
ବିସ୍ତାରିଥିବା ଯେ ଆକାଶ

ଥିଲା କି ନଥିଲା ଭୋକଶୋଷ
ରୋଗ ଦୁଃଖ ନିଜ ପର
କିଛି ବି ନଥିଲା,

ଜଣକୁ ଦେଖିବା, ଅନ୍ୟସବୁ କିଛି ପ୍ରତି
ଆଖିକାନ ମନ ବୁଜିଦେବା
ୟାକୁ କ'ଣ କୁହାଯାଏ ?
ଏତେବଡ଼ ସଂସାର ଭିତରେ
ଜଣକୁ ହିଁ ଖୋଜିହବା
ବ୍ରହ୍ମାଣ୍ଡମୟ କେବଳ ଜଣକୁ ଦେଖିବା
ନ ଦେଖିଲେ ଅନ୍ଧ ହୋଇଯିବା
କ'ଣ ୟା'କୁ କୁହାଯାଏ ?

❑❑❑

# କହି ନହେଲେ

କହି ଆସୁ ଆସୁ ଅପ୍ରସ୍ତୁତ
ଶବ୍ଦର ପୋଷାକ ପିନ୍ଧି ପାରିଲା ନାହିଁ ଯିଏ
ଲକ୍ଷ ଲକ୍ଷ ଉଚ୍ଚାରିତ ଶବ୍ଦ ଭିତରେ
ସେ ନିଆରା–

ଝୁଣ୍ଟିଲା ତେଣୁ ତଣ୍ଟି ମୂଳେ
ବସି ରହିଲା ପଥର ପରି
ଏଣେ ଖାତିର ନାହିଁ ସୂର୍ଯ୍ୟର,

ରଥ ଦୌଡ଼ିଚି
ଆକାଶର ଏପାରି ସେପାରି
ହରିଣର କାନ ପରି
ଈଶ୍ୱରଙ୍କ ତଳିପା ପରି
ପଶ୍ଚିମାଶା ନାଲି ।

କଣ କଣ କହିଥିଲି କୋଉଠି
କାହାକୁ କଣ ପାଇଁ
ସବୁ ହଜି ସାରିଲେଣି, ମନେ ନାହିଁ
ଏତେ ବେଶୀ ହୈ ଚୈ ଭିତରେ ବି
ସେଇ କହି ନ ହେଇଥିବା କଥା
ଅଚଳ ପଥର ଖଣ୍ଡକ ପରି
ବସି ରହିଚି
କେତେ ବେଳେ ତଣ୍ଟି ମୂଳେ ତ
ଧକ୍ ଧକ୍ ଛାତି ପାଖରେ,
ରକ୍ତ ସୁଅରେ ପହଁରୁଚି କେତେ ବେଳେ
କିଇଁ ରହିଚି ।

କହି ନହେଲେ
କଥା ବୋଧେ ଅମର ହୋଇଯାଏ !



## ଦିଶି ଯାଉଚ ଯେ !

ଏତେ ଦୂରରୁ
ସ୍ୱର ଶୁଭିଗଲା ତୁମର
ତା' ସାଥୀରେ
ତୁମ ଓଠ, କପାଳ, ବେକ
ଆଗ୍ରହ, ଆବେଗ
ଆଜି ହୋଇଗଲା ମୋ ଭିତରେ ।

କହିପାରିବି ନାହିଁ ଠିକ୍
ଆଖିରେ, କାନରେ କି ମନରେ-
ମନର କ'ଣ -ଥାଏ ଗୋଟେ ଆୟତନ ?
ମନ କ'ଣ ପର୍ଦ୍ଦାଟେ
କାଗଜ ନାଁ କାନ୍‌ଭାସ୍ ନାଁ ମଠାଚଦର
ସ୍ମୃତି-, ଚିତ୍ରକର ?
ନ ହେଲେ ବା
କର୍ଣ୍ଣକୁହର, ନେତ୍ରପଟଳ
କୋଉଠି ଦିଶିଗଲା ମୁହଁ ତୁମର ?

ବିଶ୍ୱାସ କର,
ଆଖିକାନ ବୁଜିଦେଲେ ବି ଦିଶେ,
କେମିତି କହିବି ଯେ
ମନର ଇନ୍ଦ୍ରିୟର
କେଉଁ ନିର୍ଦ୍ଦିଷ୍ଟ ପୃଷ୍ଠାରେ
ଲେଖି ହେଇଗଲ ତୁମେ

ଏତେ ଦୂରରେ
ତୁମ ସ୍ୱର
ଅଥଚ, ଏତେ ପାଖରେ
ଦିଶିଯାଉଚ ତୁମେ
ଅବିକଳ !



# କହି ହେଲାନି କିଛି

କଥାକୁହା ଶାରୀପରି ଆଖିଦୁଇଟି ତା'ର
ଟଳମଳ ଲୁହରେ,
କିଛି କହିପାରିଲି ନାହିଁ ମୁଁ-

କେବଳ ଲୁହ ନୁହଁ
ନୁହଁ ଅନ୍ୟମନସ୍କତା
ନୁହଁ ହରାଇବାର ଆକୁଳପଣ
ନୁହଁ ବି
ସବୁଠୁଁ ଛଡ଼େଇ ଆଣିବା ନିଜକୁ
ନୁହଁ ଶିହରଣ କେବଳ
ବହୁ ପୀଡ଼ା, ବହୁ କଷଣ
ଏକାଏକା ଭୋଗିବାକୁ ପଡ଼େ
ଭଲ ପାଇଲେ,
ମନରେ ନିଆଁ ଲାଗିଲେ ।

ଭଲ ପାଇବା କ'ଣ ନିଆଁ ?
ଉତ୍ତର ଦେଇ ପାରିଲି ନାହିଁ ମୁଁ ।

ବର୍ଷିୟସୀ ପୃଥ୍ୱୀର
ଲକ୍ଷେ ଭାଷାର ଲକ୍ଷେ କବି
ଭଲ ପାଇବାର ଅଂଶଟେ ମାତ୍ର ଧରିକି
ଖିଅପରେ ଖିଅ ଓଟାରି
ସାରି ଦେଇଛନ୍ତି କାଳି,
ଆପଣାକୁ ସଂଭାଳି
ମିଛରେ କହିଛନ୍ତି, ଯେ ଚିରନ୍ତନ ।
ଅଥଚ ଯୋଉଠି ତା'ର ଜନ୍ମ
ସେଇଠି ମରଣ ।

ଏତକ କହିପାରିଲି ନାହିଁ ମୁଁ
ସେ ସୁନ୍ଦରୀକୁ—

ଯେ ଈଶ୍ୱର କାହିଁକି ବାଛିଲେ ତା'ର ଆଖିକୁ
ଯେ ଆଖି ଦି'ଟି ପହଁରିବେ ସମୁଦ୍ର
ମାପି ବସିବେ ମହାଶୂନ୍ୟ
ସେମାନେ ତ ଆଢ଼େଇ ପାରିଥା'ନ୍ତେ ସହଜରେ
ଥିଲେ ଟିକେ ଚାଲାକି
ଟିକେ କାଣ୍ଡଜ୍ଞାନ !

ସେତକ ନାହିଁ ବୋଲି
ଭଲ ପାଇବାର ପୀଡା କେବଳ ତାଙ୍କର,
କଅଁଳ ଲତା ପରି ଭଲପାଇବାର ଦେହ
ଅବଲମ୍ବନ ତା'ର ଅସ୍ଥିର ।

କବିମାନେ କହନ୍ତି
ଭଲ ପାଇବାର ରାସ୍ତା-କରତ ଦାନ୍ତ
ହୁଏତ ଯେ ରୂପକଟି ବି
ଯଥେଷ୍ଟ ନୁହଁ, ସେ ପୀଡ଼ାର ।
❑❑❑

# ନଈବଢ଼ି

କଦମ୍ବ ଫୁଲକୁ
ଡାକି ଆଣିଲା ମେଘ ଡମ୍ବରୁ
ନାଁ କଦମ୍ବ ଭିଡ଼ି ଆଣିଲା
କଳାଭଅଁର ମେଘକୁ
ଜଳି ଉଠିଲା ତା'ର ସୁଗନ୍ଧ-ବୁକୁ ?

ଲେଖି ବସିଲି
ତୁମର ଆଦୌ ବୟସ୍କ ହେଉନଥିବା
ଗ୍ରୀବାକୁ, ପୃଷ୍ଠପଟକୁ
ତୁମକୁ ବେଢ଼ିଥିବା ଚିହ୍ନା ଅଚିହ୍ନା ଋତୁଙ୍କୁ
ମୋର
ସାରା ଲୋମକୂପ ଭର୍ତ୍ତି ଧାନଫୁଲକୁ
ଧାନ, ଢୋକୁଥିବା କ୍ଷୀରକୁ
ବର୍ଷାରେ ତିନ୍ତୁଥିବା ଆମ ଦିନରାତିକୁ
ନଈବଢ଼ିରେ ଭାସି ଯାଉଥିବା ଆମ ନିଶ୍ଚିତତାକୁ
ବତୁରି ଯାଉଥିବା କାନ୍ଦକୁ
ଉପରେ ଚାହିଁ ରହିଥିବା
ନିର୍ଲିପ୍ତ ଆକାଶକୁ
ଗୋଳି ପାଣିର ଫୁଫୁକାରକୁ, ବିଷକୁ
ବନ୍ଧ ଉପରେ ନାଗୁଣୀର ସଂଗମକୁ
କଠୋରତମ ଆର୍ତ୍ତିକୁ, ନିୟତିକୁ
ଜଣା ଅଜଣା ଫୁଲର ବାସ୍ନା ବିଛେଇ
ଉତୁରୁଥିବା
ଯେ ନବ ଯୌବନା ମାଟିକୁ-

କିଛି ଲେଖି ହେଲାନି କିନ୍ତୁ ।



# ଆଗ୍ରହ

ବର୍ଷାଧୁଆ
ଧୂସର, ସବୁଜ ଘାସ ପରି ତୁମ ବାଳ,
ଗଛ ମହୁଡ଼କୁ ଛାଡ଼ ଛାଡ଼ ହେଉଥିବା ଖରା
ହସ ତୁମର,
ଗାଢ଼ନୀଳ ପଞ୍ଜାବୀରେ ତେଜୀୟାନ୍ ପୌରୁଷ
ଏତେ ପାଖକୁ ଘୁଞ୍ଚି ଆସ
ଋତୁର ପ୍ରଥମ ଫୁଲ ପରି
ବାସି ଉଠ, କାହିଁକି ?

ଉତ୍ତର ଖୋଜୁ ଖୋଜୁ ମୋ' ହାତ
ଲମ୍ବିଯାଏ
ଛୁଏଁ, ବେଶି ବେଶି ଛୁଏଁ
ଆଃ, –ଆଗ୍ରହ ?
ମୋ' ପ୍ରତି ଆଗ୍ରହ ତୁମର ?
ମାନେ ?
ଯେମିତି ଆଗ୍ରହ ଦେଖିବାକୁ ସମୁଦ୍ର
ନହେଲେ ବା ଶିମିଳିପାଳ ?

ଦିଗ୍‌ବଳୟ ତଳେ
ଗାଢ଼ ନାଲି କଳା ମିଶା
ପ୍ରସବର ରକ୍ତ ପରି ଅନ୍ଧକାର
ତାରାରେ ତାରାରେ ଲୁଚାଛପା
ଠରାଠରି,
କେତେ ଯେ ଡେରିହେଲାଣି, ଡେରି

ଆଗ୍ରହ କ'ଣ ଯଥେଷ୍ଟ ?
ଯୁଗ ପରେ ଯୁଗ
ଆକାଶ ପରେ ଆକାଶ

ପାରି ହେଇ ଚାଲୁଥିବା
ସ୍ତ୍ରୀ ଲୋକର ଆଶାବାଡ଼ି ?
କଷ୍ଟ, ଭାରିକଷ୍ଟ ।

ଏଣିକି ଆଉ
କେତକୀ ପାଖୁଡ଼ା ନୁହଁତ-
ଶ୍ୱାସକୁ, ଝାଳକୁ ଛାପିଛାପି
ବ୍ଲଟିଂ ପେପର ପାଲଟି ଥିବା
ମୋର ଲଲାଟ,
ଦାରୁଣ ବିଦାୟରେ
ଶୂନ୍ୟ ଶିହରାଇ ଦେଇଥିବା
ମୋର ହାତ,
ବିଜୁଳି ପରି ଝଲସି ଉଠୁଚି ଏଥର ।
ଫେରାଇ ଦେଉଛି ତୁମ ଆଗ୍ରହ
ନେଇଯାଅ...

❑❑❑

# କିରଣ

ସାରାଟା ସମୁଦ୍ର ପହଁରି ପହଁରି
ଆସୁଥିଲା ଚନ୍ଦ୍ର
କୂଳକୁ ଉଠିଲା-
ଓଦା ସରସର ଦେହରେ
ସେ ଘୂରି ବୁଲିଲା ମୋ ଚାରିକଡ଼
ତାର ଅନ୍ୟମନସ୍କ ଆଖି
ଲାଖିଥିଲା ମୋଠିଁ-

କହିଲି, 'ଦିଅ,
କ'ଣ ଦବ ପରା,
ଆକାଶ ସମୁଦ୍ର ଦି' ଭାଗ କଲ ଯେ
ମୋର ଭାରି ଜରୁରୀ, ଦିଅ-'

ଅଦୂରରୁ ଘୁଞ୍ଚି ଘୁଞ୍ଚି ଆସୁଚି ପାହାଡ଼
ମୁହୂର୍ତ୍ତକ ପରେ
ମୁଁ ଧକ୍‌କା ଖାଇବି ତା' ଠିଁ-
ଯେତେ ଶୀଘ୍ର ପାର
ଠୋପାଏ କିରଣରେ
ସଜାଇ ଦିଅ ତ ମୋର କପାଳ ।'

❑❑❑

## ଅନୁରାଗ ତୁମର

ସଂଧ୍ୟାର ଲାଲ୍ ରଂଗ
କ'ଣ ମନୋରମ ତୁମର ଅନୁରାଗ ?
ବେଶି ବେଶି ଏକା ଲାଗେ
ତୁମେ ଥିଲେ ଆଖପାଖରେ,
ନ ଥିଲେ
ଗୋଟାଏ ଛାୟାପଥର ଦୂରତା
ଛଟପଟ ହେଉଥାଏ ତୁମ ମୋ ମଝିରେ ।

ବହଳ ଘାସତଳେ ଛପିଥିବା ଠେକୁଆ ପରି
ଗଛ ଗହଳରେ ଲୁଚିଛପି ତୁମ ଗାଁ-
ମୋର ଜନ୍ମ ଆଗରୁ ବିତିଥିବା
ଶୈଶବ ତୁମର,
ତୁମ କୈଶୋର ମୋର ଅଗୋଚର
ମତେ ଚିହ୍ନିବା ଆଗରୁ ତୁମ ଯୌବନ
କ'ଣ ଥିଲା ଏମିତି ଆକର୍ଷଣୀୟ
ଦିଗ୍ ବିଦିଗ ବିସ୍ମୟ
ଲାଗୁଥିଲା, 'ମୋର' 'ମୋର' ?

ମୁଁ ନ ଥିଲି ।
ଅନବରତ ଛଳଛଳ ମହାନଦୀ
ଛାତିଏ ତାରା ଛାତିଏ ମେଘ ଧରି
ଧାଉଁଥିଲା-
କୂଳର ଗହଳ ବୁଦା ଭିତରେ
ଗହନ ନିଦ ଚଢ଼େଇର
ନିୟମିତ ପହରାଦାର୍ ସୂର୍ଯ୍ୟଚନ୍ଦ୍ର ।

ଅସ୍ତଖରା, ଗୋଧୂଳି, ରକ୍ତସ୍ରାବ, ଲାଜ, ଅରୁଣିମା
ଯେଉଁ ନାଆଁ ଦିଅ ନାଁ କାହିଁକି ତାକୁ
ତା' ମିଠାମିଠା ନିବିଡ଼
ରହିପାରେନା ବ୍ୟବଧାନ ସେଠାରେ
ସୂତାଖିଅର ।

ମଧ୍ୟାହ୍ନର ଚାବୁକରେ
ସିଝିଯାଉଥିବା ମୋର ମୁହଁ,
ସବୁତକ ସନ୍ତାପର ବୋଝରେ
ଝୁଙ୍କିଥିବା ତୁମ ଦୀର୍ଘଦେହ
ଲାଗେ ଯେମିତି, ସବୁଜ ତରୁଣ ଧାନ
ଥାକ ଥାକ କାଶତଣ୍ଡୀ, ଉଦ୍ଦଣ୍ଡ ପବନ ।

ଯେତେକ କ୍ରୋଧ, ଅହନ୍ତା, ଅସହଣିପଣ
ଠକିବା, ତଣ୍ଟିଚିପିବା,
ଅମାରରେ ସୁନା ଭରିବା
ସବୁ ଅକାରଣ
ସବୁ କେମିତି ବାର୍ଦ୍ଧକ୍ୟପରି ଶିଥିଳ ।
ଅବସାଦକର ।

କେବଳ ଯେ ଅସ୍ତକାଳର ଖରା
ଘନକଠିନ ଅନୁରାଗ ତୁମର ।

❑❑❑

# କ୍ଷଣ ସୁନ୍ଦରୀ

ଆଜି ଦ୍ୱିତୀୟା ନା ?
ଦୀପଜଳାଇ ରଖିଦେଇଚି
ଆକାଶର ଉଚ୍ଚତମ କୋଣରେ,
ନିଭିଯିବ ଏଇନା-

କାକର ଠୋପାକର
ସଜେଇ ରଖିବା ସୂର୍ଯ୍ୟକୁ,
ଜଳଦର୍ପଣରେ ମୁହଁ ଦେଖିବା
ବଉଦର,
ବିସ୍ତାରିତ ଦର୍ପ
ମୁଣ୍ଡ ଉଠାଉଥିବା ବୁଦ୍‌ବୁଦ୍‌ର,
ଆଞ୍ଜୁଳାଏ ପଙ୍କର ଗର୍ଭକୋଷରେ
ପଦ୍ମବୀଜର ମହିମା,
କେତେ ସ୍ତବ୍‌ଧତା, ବ୍ୟାପ୍ତି କେଜାଣି
ଚାଖଣ୍ଡକ ଛାତି ଭିତରେ ଏଇନା !

ଗ୍ରହାନ୍ତରର ଅଥଳ ଜଳ ଘେରରେ
ନୌକା,
ନୌକା ଭିତରେ ସୁନ୍ଦରୀ
ସେ କ'ଣ
ଅବିକଳ ମୋରି ଭଳି ?
ଅଛି ପୁଣି ନାହିଁ, ଏଇନା ?

ଶୂନ୍ୟର, ସମୟର, ଜୀବନର
ମହାବିସ୍ତାର ସାମ୍ନାରେ
ଠିଆ କ୍ଷଣ ସୁନ୍ଦରୀ

ମହକ ଅଛି, ତହକ ଅଛି ତା' ଠିଁ
ଛାୟାପଥର ଝିକ୍‌ମିକ୍ ପଦକ
ବଉଦ ଅବା ନିଆଁ
ସବୁତକ ସ୍ୱଜନେଚ୍ଛା
ଗଳାରେ ତାର
ମାଳ ହୋଇ ଲମ୍ବିରହିଚି ।

❑❑❑

# ବସ୍ତ୍ରହରଣ ନୁହେଁ

ଶାଢ଼ିକୁ ନେଇ କେତେ ପୁରାଣ
କେତେ ଗୀତ ଗପ
ହେଲେ, ଶାଢ଼ି ଯେ କେବଳ ପ୍ରତୀକ !

ନ ହେଲେ
ଶାଢ଼ି ଉଲାରି ଦେଲେ
କେବଳ ଯେ ଆଘାତ ଅପମାନ ହୁଏ
ତା' ନୁହେଁ,
ନାରୀତ୍ୱ ଏକ ମର୍ଯ୍ୟାଦା, ଏକ ଗୂଢ଼ସତ୍ତା
ଯାହା ଖାଲି ଶରୀରରେ ନଥାଏ
ଥାଏ ନାରୀର ସ୍ୱପ୍ନରେ, କଳ୍ପନାରେ
ରକ୍ତରେ, ମେଦରେ, ସ୍ୱେଦରେ ଥାଏ ଅବଶ୍ୟ,
ଥାଏ ମାତୃତ୍ୱରେ, ଦେବୀତ୍ୱରେ ।

ଆଜି କେତେ କେଉଁଠି
ଦୁର୍ମଦ ଦୁଃଶାସନ
କେଉଁଠି ଛଳ ପ୍ରେମିକ ତ
କେଉଁଠି ମୂଢ଼ ସ୍ୱାମୀ
ବହୁବିଧ ବିକାରର ଧର୍ଷଣ ।
ଅଥଚ, ନାହିଁ 'ସୁଦର୍ଶନ'
ନାହିଁ ବି
'ଦକ୍ଷିଣବାହୁ ଉପାଡ଼ିବ' ଭୀମସେନ ।

ଆଜି ବିବସ୍ତ୍ରାଠାରୁ ରକ୍ତଧାର
ରଜ-ରକ୍ତ ନୁହଁ
ହୃତ୍‌ପିଣ୍ଡରେ ଶରାଘାତର !

ବୃଥା ଯାହା ମୋର ସହିଷ୍ଣୁତା
ଦୀର୍ଘ ପଚିଶ ବର୍ଷ ଧରି
ନଈ ବାଲିରେ
ଜୀଅନ୍ତା ମୀନପରି ପବନ ଢୋକିବାର କଷ୍ଟ
ରଂଗିନ୍ ସୂର୍ଯ୍ୟାସ୍ତ ଯାଏଁ ବଂଚିଯିବାର
ଦୁଃସାହସ ।

ସଭାସଦ୍‌ଙ୍କ ଅଟ୍ଟହାସ
ଅପୋଗଣ୍ଡର ଚାତୁରୀ
ମଝିରେ ଚିରିଯାଉଚି ମୋର
ତ୍ରିଲୋକ ତ୍ରିକାଳ ବ୍ୟାପି
ମର୍ଯ୍ୟାଦାର ନୀଳାମ୍ବରୀ ଶାଢ଼ି ।

□□□

# ସମୁଦ୍ର ରଖିଲା ନାହିଁ

'ସମୁଦ୍ରରୁ ବୁନ୍ଦାଏ' କହି
ଯେତେଥର ମୁଁ
ଫିଙ୍ଗି ଦେଇଚି ତାକୁ ସମୁଦ୍ରରେ
ସେ ମିଶିନାହିଁ ।

ଶ୍ୱଶୁରଙ୍କ ଶ୍ରାଦ୍ଧପତ୍ରରେ
କୁଶବଟୁ ପିଣ୍ଡି ଅନ୍ନ ବାଢ଼ିଲାବେଳେ
କୁନି କୁନି ପୁଅଝିଅଙ୍କୁ
ଶ୍ରାଦ୍ଧପତ୍ରରେ ବସାଇଲାବେଳେ
ମୁଁ କିନ୍ତୁ ଭାବି ନଥିଲି ଯେ
ଆଦୌ ସେ ମିଶିବ ନାହିଁ ।
ଅଢ଼େଇଗୋଟି ଯୁଗ
ବିତିଯାଇଚି ଯା' ଭିତରେ ।

ଅତଳାନ୍ତ ସମୁଦ୍ରରେ
ବୁନ୍ଦାଏ ଲୁଣି ଲୁହ
ସତେ କ'ଣ ନ ମିଶିବ
ଘନ କଠିନ ପାଲଟି ଯିବ-
ଅଲଗା ଭାସି ରହିବ- !

କେଡ଼େ ନିଶ୍ଚିନ୍ତରେ ଗୀତଗାଇଲି ମୁଁ
ମିଶିଯିବ ବୋଲି
ମୋର ଲୁହ ବୁନ୍ଦାକ
ପୀଡ଼ାର, ଅପମାନର
କଳିଜାରେ ଛୁରୀଦାଗର,
ବୁନ୍ଦାଏ ଯନ୍ତ୍ରଣାକୁ
ଫିଙ୍ଗି ଦେଇଥିଲି ସମୁଦ୍ରପାଣିକୁ ।

କିନ୍ତୁ ସମୁଦ୍ର ଯେ
ନେଇ ଜାଣେନା କିଛି ।

ଅମାପ ରତ୍ନକୁ, ଜୀବକୁଳଙ୍କୁ
ସେ ସାଇତି ରଖିଚି ଖାସ୍ ମୋରି ପାଇଁ
ଚାହିଁଲେ ହିଁ ପାଇଯାଇଚି ମୁଁ ।

ନ ଚାହିଁଲେ ବି
ଶ୍ୱଶୁରଙ୍କ ଶ୍ରାଦ୍ଧରେ ଆଜି
ସକାଳୁ ସକାଳୁ
ସମୁଦ୍ର ଫେରାଇ ଦେଇଚି ମତେ
ସେଇ କଠିନତମ ପୀଡ଼ାକୁ-

ତା' କଦଳୀପତ୍ର ରଙ୍ଗର ପାଣି ଭିତରେ
ଖୁବ୍ ଗଭୀରରେ
ତଥାପି ଏକକ ହୋଇ ଭାସୁଥିବା
ମୋର ସେଇ ଇସ୍ପାତର ଲୁହବୁନ୍ଦାକୁ ।
□□□

# ଅଗ୍ନି-ସମିଧ

ତୁମେ ଦିଗ୍ ବିଦିଗ ବର୍ଷା ଯଦି
ମୁଁ ବିଜୁଳି ଗାରେ ଉଲ୍ଲଂଗ
ଅଶିଣର ଧାନ କିଆରୀ ମୁଁ
ଆକାଶ ତୁମେ, ଶଂଖଚିଲ-ରଂଗ ।

ତୁମେ ଯଦି ଅରଣ୍ୟଘେରା ଶରତ
ମୁଁ ବଉଳ ଭର୍ତ୍ତି ଶାଗୁଆନ୍ ଗଛ
ତୁମେ ପର୍ବତର ଅଭ୍ୟନ୍ତର ତ
ମୁଁ ଫାଟି ପଡୁଥିବା ପ୍ରପାତ-

ସମାଧିସ୍ଥ ତପସ୍ୟା ତୁମେ
ମୁଁ ମଗ୍ନା ସନ୍ୟାସିନୀ
ଭାବାତୁର ଉଚ୍ଚାରଣ ମୁଁ
ତୁମେ ଓଁ କାର ଧ୍ୱନି ।

ବିଜୁଳି ହୁଏକି ପ୍ରପାତ
କି ଗର୍ଭବତୀ କ୍ଷେତ
ସନ୍ନିଧିରେ ତୁମର
ମୁଁ କେବଳ ସୁଗନ୍ଧ-ସମିଧ
ତୁମେ ଅଗ୍ନିମୟ ବାହୁବଳୟ
ବ୍ୟଗ୍ର, ସମୁଦ୍ୟତ ।



## ପ୍ରଳୟ, ସୃଜନ

ନିଆଁ ଭଳି ତୁମର ଅଭିମାନ
ପ୍ରଳୟ ପରି ତୁମର ଅଭିମାନ
ଲକ୍ଷ୍ୟସିଦ୍ଧ, କୃତାର୍ଥ ଶବ୍ଦର ଧନୁର୍ବାଣ,
ଫେରିଆସ ମୋର କୋଳକୁ
ମୋର କପାଳକୁ
ମୋର ଅନ୍ଧାରକୁ
ହାହାକାରକୁ
ମୋର ନିଗୂଢ଼ ପରିତୃପ୍ତିର ବିନ୍ଦୁକୁ
ଉଚ୍ଛାଟ ମୋର ଲୋମକୂପକୁ
ଆତ୍ମାର ଅସମାପ୍ତ ଉଲ୍ଲାସକୁ ।

ଭୁଲି ଯାଅନା,
ବଡ଼ ଚଂଚଳ ଯେ କାଳ
ବଡ ଉର୍ବର ଯେ କ୍ଷେତମାଳ
ଅସଂଖ୍ୟ କ୍ଷତର, ଆର୍ତ୍ତନାଦର
ଶୋଣିତ ଲୁହରେ ଭିଜି
ତଥାପି ସ୍ଥିର, ଅବିଚଳ ଯେ ପୃଥ୍ୱୀ
ବସି ରହିଛି ଏଇଠି,
ସଂଭାବନାରେ ମୁଖର
ମାଳ ମାଳ ମେଘର ପରିଧାନ ତାର
ଆଖି ଦୁଇଟି ନିର୍ଝର
କେଡ଼େ ଶ୍ୟାମଳ ତାର ସ୍ତନାଗ୍ର !
ଓଷ୍ଠପୁଟ ଅଧୀର, ବ୍ୟଗ୍ର ।

ହେ ବାଙ୍ମୟ ଉଲ୍‌କାର ଉଚ୍ଚାରଣ
ଛୁଟିଆସ ମିଶିଯାଅ

ପଥର ପାଲଟି ଯାଇଥିବା ବକ୍ଷରେ,
ଅସ୍ତିତ୍ୱରେ ମୋର ।
ସାକ୍ଷୀ ହୋଇ ରହୁ
ଆୟୁଷ୍ମତୀ ମାଟି
ଆଉ ଅନୁକ୍ଷଣ ପ୍ରଳୟ, ସୃଜନ ।

□□□

# ମରଣ ଆଗରୁ

ତୁମେ ଥାଆନ୍ତ, ବସିଥାନ୍ତ
ମୁଁ ବି ବସିଥାନ୍ତି ପାଖରେ
ଲୁହ ଥାଆନ୍ତା, ମୋ ଆଖିରେ ବା ତୁମ ଆଖିରେ
ଜଣେ ପୋଛୁଥାଆନ୍ତା, ଅନ୍ୟଜଣକର ଲୁହ
ଏଇଠି ଗାଡ଼ି ଭିତରେ
କି ଅଜଣା କେଉଁ ସମୁଦ୍ରକୂଳରେ
ବା ଆଗରୁ ଆମେ ବସୁଥିଲେ ଯୋଉଠି
ସେଇ ଅଧାଭଂଗା ବେଞ୍ଚ ଉପରେ ।

ନିଦୁଆ ପାଣି ଉପରେ ଜହ୍ନ
ପାଣିର ଦୀର୍ଘଶ୍ୱାସ, କଡ଼ଲେଉଟା
ମୁଁ ଏସବୁ କିଛି ଜାଣେନା
ଜାଣେ ନାହିଁ ଆଗତ ଭବିଷ
ଜାଣେ କେବଳ
ସ୍ୱର୍ଗମର୍ତ୍ତ୍ୟ ପାତାଳର ଦୂରତା
ତୁମର ମୋର ।

ଏଇ ପାଖରେ ଥାଆନ୍ତ
ପିଲାଏ ଖେଳୁଥାଆନ୍ତେ
ଚଢ଼େଇମାନେ ଡାକୁଥାଆନ୍ତେ ଲଗାତର,
ମୁଁ କହନ୍ତି
'ଯେତେବେଳେ ମରଣ ହିଁ ଶେଷକଥା
ତା' ପୂର୍ବରୁ କାହିଁକି ଆମେ
ପରସ୍ପରଠୁ ଦୂରେଇ ଯିବା ?'

◻◻◻

# ବାଧ୍ୟବାଧକତା

ଏଣିକି ଧରିଆଣିବାକୁ
ପଣ କରିବି ନାହିଁ
ବାଧ୍ୟକରି ଟାଣିବି ନାହିଁ ମୋଆଡ଼େ ।

ତୁ ଆସିଥିଲୁ ସେଦିନ
ମୁକୁଳା ମୋର ଦୁଇ ବାହୁ ଭିତରକୁ
ପ୍ରଥମ ପ୍ରେମିକ ପରି, ପ୍ରଥମ ସନ୍ତାନ ପରି
ପ୍ରଥମ ଯୌବନ ପରି
ଋତୁର ପ୍ରଥମ ବର୍ଷା ପରି
ଦକ୍ଷିଣାର ଉଲୁସା ଛୁଆଁପରି
ଆକାଶ ମାଟି ହଜିଥିଲେ ସେଦିନ
ଦିଗ୍‌ବଳୟ ଠିଁ-

ଆଜି ଯଦି ତୁ ଧରିବସୁ
ନାଚାର ଅନ୍ୟମନସ୍କତାକୁ ମୋର
ଭୁଲବୁଝୁ
ତୋତେ ନେଇ ବଢୁଥିବା ମୋର ଆକୁଳତାକୁ
ତେବେ ଯା'-
ଭିଡ଼ି ଆଣିଲେ ନଥାଉ ତୁ
ଥାଏ ଖାଲି ବାଧ୍ୟବାଧକତା ।

ଘଘଘ

# ବିଷ, ଅମୃତ

ପହଂଚିଲା ବେଳକୁ
ମୁହଁ ତାଙ୍କର ଲାଲ୍ ପଡ଼ିଯାଇଥିଲା
ଶୋଷରେ,
ପାଣିଥିଲା ଯେ ଗ୍ଲାସ୍ ନାହିଁ
ଏତେବଡ଼ ସୁରେଇ
ଆଂଜୁଳା ପତେଇଲେ ସେ
ମନପୂରୁ ନଥାଏ ତାଙ୍କର
ଥରକୁ ଥର ମହୁ ଚାଖିଲେ
କୋଉଠି ତଥାପି
ଲାଖି ରହିଥିଲା ସୁଆଦ
ସରୁ ନଥିଲା ଘେନାଘେନି
ପୂରୁ ନଥିଲା ମନସଧ ।

ଆଖି ଟେକିଲେ ସେ
ଜନ୍ମରୁ ଅଥରପୀ ମୁଁ
ହାତରୁ ଛୁଟିଗଲା ସୁରେଇ
ସତେରେ କ'ଣ, ମୁଁ ନଈଟିଏ ହିଁ ?
ସେ ପଥର ପାଲଟି ଗଲେ ସେଇଠି
ଆଖିରେ ପଲକ ନାହିଁ-
ସତେରେ, ମୁଁ ନଈଟିଏ ହିଁ ।

ଅକୁଳାଣ ହେଲା ନାଆଁ
ମହାନଦୀ, ବିରୂପା କି କୁଆଖାଇ
କୋଉ ନାଆଁରେ
ଡାକିଦେଲେ ସେ କେଜାଣି
ଫିଟି ଆସିଲି ପାହାଡ଼ ଖୋଲରୁ

ମୁଁ
କୁଦିପଡ଼ିଲି ଆକାଶରୁ ।

ପାଣିସାରା ଝଲମଲ ଆଇନା
କହିଲି, ଆସନା'-
ମୁହଁ ଦେଖିବ ତୁମର,
ଦେଖିବ ତୁମର
କାକର ଠୋପାକର ଅହଂକାରକୁ
ଜଙ୍କ୍‌ଲଗା ଲୁହାକଣ୍ଟାର ଈର୍ଷାକୁ
ଦେଖିବ, ବିହ୍ୱଳ କବିତାଟି ପରି
ତୁମ ପ୍ରଥମ ଅନୁରାଗକୁ
ବିଷକୁ ଅମୃତକୁ
ପାଗଳପଣକୁ ।

❑❑❑

# ସୁନାମୀ

ମାତିଉଠୁଚି ଲହଡ଼ି
ପାହାଡ଼ ପରି
ତାକୁ ଟପି ଯାଇ ହବନି
ସୁନାମୀ ।

ତୁମର ମୋର ଗୋଟିଏ ରାସ୍ତାଥିଲା ସେ ଦିନ
ସଂଧ୍ୟା ଗୋଟିଏ
ଗୋଟିଏ ବି ଦି'ପ୍ରହର, ରାତି
ମୁହୂର୍ତ୍ତ ଲମ୍ବିଯାଉଥିଲା ଆକାଶ ଯାଏଁ
ଲକ୍ଷ୍ୟ ଥଲା ଗୋଟିଏ ।

ଆଖିଡ଼ୋଳା ଉଚ୍ଚାଟ ଥିଲା-
ଉଦ୍‌ଗ୍ରୀବ ମୁଁ ତୁମ ଦିଗରେ
ତୁମେ ମୋ ଦିଗରେ
ଦୁଇକଡ଼େ ସମୁଦ୍ର
ବିପଣୀର ଜନତାର, ଅପରିଚୟର
ଅଥଚ, ଗଛମୂଳେ ତୁମେ
ଦୂର ବତୀଖୁଣ୍ଟର
ଧିମା ଆଲୁଅରେ ମୁଁ
ଏତେ ଅନ୍ଧାର, ଗଛତଳ
ଛାତି ଥର୍ଥର
ନିର୍ଭୁଲ ଚିହ୍ନି ପକାଉଥିଲି ମୁଁ-
ଅନ୍ଧାରରେ ଜଳୁଥିଲା ତୁମ ହୀରା ଦେହତ
ଲୁଚି ପଡୁଥିଲା ଅନ୍ଧାର
ମୋର ଇସ୍ତ୍ରୀକରା ବାଳରେ ।

ଆଜି ତୁମେ ଏତେ ପାଖରେ !
କେତେ କେଜାଣି ପାଦଚିହ୍ନ
ପଡ଼ିଛି, ଲିଭିଛି-
କେତେ ମୃତ୍ୟୁ, ସନ୍ତାପ, ହାହାକାର
ଦାରୁଣ ଆକସ୍ମିକତା
ପ୍ରଳୟର ବଟପତ୍ର,
ଯେ ଅପରିଚୟର ଧୂସର ସମୁଦ୍ର
ମୁଣ୍ଡ ପିଟୁଚି, ଗର୍ଜୁଚି ଏଠି
ତୁମ ଆଉ ମୋ ମଝିରେ,
ତାକୁ ଡେ଼ଇଁ ଯାଇ ହେବନି
ସୁନାମୀ ।

❑❑❑

# କିଛି ନୁହେଁ

ଉଡ଼ିପଳାଉଥିବା ମୁହୂର୍ତ୍ତର ବି
ଉଜ୍ଜ୍ୱଳ ଅତୀତଟେ ଅଛି ।

'ଏଇନା' ପୂର୍ବର ସମୟ,
'ଆଜି' ପୂର୍ବରୁ ଗତକାଲି,
ଲୁଚି ପଡ଼ିଥିବା ନଦୀ ସରସ୍ୱତୀ,
ଆଜିବି ଜୀବିତ ଅଛି ।

ଘାସବୁଦାରେ ଗୁନ୍ଥା ପିଂପୁଡ଼ି
ଘାସ ଗୁନ୍ଥାଗୁନ୍ଥି ଭୂଇଁରେ,
ସତେ କି ଗୁନ୍ଥାଗୁନ୍ଥି ହେଇଚି ଢେଉ
ଲହକାଲତାର ନୀଳ ସୂତାରେ !

ସପ୍ତସ୍ୱର୍ଗରେ
କଂକିଟିଏ ଯେତିକି
କୁଆଟିଏ ବି ସେତିକି
ସେତିକି ଯେ ବନସ୍ପତି ।
ଏତେ ବଡ଼ର ସାମ୍ନାରେ
ଛୋଟର କିଛି ଗୁରୁତ୍ୱ ଅଛି ?

ତଥାପି
କୁଆ କୁଆ, ଗଛ ଗଛ, କଂକି କଂକି
ମାଟି ଉପରେ ତା'ର
ଭିନ୍ନ ଆକାର, ଭିନ୍ନ ନାଆଁ, ଭିନ୍ନ ପରିଚିତି !

କାଳ ସମୁଦ୍ରରେ
ଆଖି ପିଂଛଡ଼ା ଯେତିକି

ଆମର କଥାହବା ବି ସେତିକି,
ସେତିକି ଜୀବନକାଳ ଯେ କବିଟିର ।

ତଥାପି
ଆଳାପ ଆଳାପ, ଜୀବନଜୀବନ, କ୍ଷଣକ୍ଷଣ
ତାକୁହିଁ ନେଇ କବି ତିଆରେ
ପାଣିଗାରର ସଂକଳ୍ପଟିଏ,
ଆଙ୍କେ, ଗୋଟେ ପାଣି ଫୋଟକାର ସ୍ୱପ୍ନ ।

❑❑❑

# ଦିନଶେଷର ଘର

ଦିନଶେଷର ଆଲୁଅ
କ୍ଷୀଣ ତରତର,
ମୁହୂର୍ତ୍ତଟିଏ ବାକି
ତଥାପି ଲୋଡ଼ା ନିବାସର
ହଂସୁଲୀ ଶେଯର ।

କାହିଁକି ଯେ ହବ ନାହିଁ
ଗଛ କୋରଡ଼, ହିଡ଼ର ଗାଡ଼
ପଙ୍କ ଭିତର ଅନ୍ଧାର
କାହିଁକି ହବନି
ପରିତ୍ୟକ୍ତ କୋଠାର କପ୍‌ବୋର୍ଡ଼
କି ପତଳା ବାଉଁଶ ନଳୀର ନୀଡ଼
ନ ହେଲେବା
ନିଧଡ଼କ ଘର
ବାୟା ଚଢ଼େଇର ?

ଦିନ ସରିଲେ
ଆକାଶରୁ ରକ୍ତ ପୋଛି ପୋଛି
ସାରାଟା ନଈର
ଉଜ୍ଜ୍ୱଳ, ସୁଦୀର୍ଘ ହାତ କଳା ପଡ଼ିଗଲେ,
ଘର ଖୋଜିବାରେ ଲାଗିଯାଏ କିଏ ?
ନିରାପତ୍ତା ? ପାଣି ଫୋଟକାର ?

ଚାଳର ଆଢୁଆଳ, ପାଣିଢାଳ, ପଖାଳ
ଘିଅବଳିତା ଚଉରାମୂଳ
ଝାଟିବାଡ଼, ମଧୁମାଳତୀ
ହଳଦୀବସନ୍ତ, କଜଳ ପାତି

ଏଣେ ବିନ୍ଦି ପାକେଟ୍ କ୍ରିମ୍ ଲୋସନ
ଦର୍ପଣ
ମୋର ଶାଢ଼ି, ଚୂଡ଼ୀ
ମୋର ଶେଯ ସୁପାତି !

କେତେ ରୋଷଣୀ କୋଳାହଳ
ବ୍ୟଗ୍ରତା ଭିତରେ
ବରଫଖଣ୍ଡ ଭଳି ତରଳି ବୋହିଯିବା ମୋର
ମଲ୍ଲୀବୁଦା ଆଡ଼କୁ
କୁଆ କୋଇଲିଙ୍କ ଅଣ୍ଡକୁ
ନୂଆ ମଣିଷର ଧମନୀକୁ-
ସ୍ୟାହି ହେଇ ବିଛେଇ ଯିବା ମୋର
ଲୁଚେଇଦବା
ଅଲିଖିତ ଧାଡ଼ି ସବୁକୁ !

ମୁଣ୍ଡ ଉପରେ ଛାତ ନଥିଲେ
ଲେଖିହୁଅନ୍ତା କବିତା
କବିତା ବି ଚାଟି ଯାଆନ୍ତା
ଦରଜକୁ, ଚିଆଁକୁ
ଅଥଚ, ଗୋଧୂଳି ଉଡ଼ିବୁଲିଲେ
ନାନାରଂଗରେ, ଆକାରରେ
ଆକାଶରେ
ଘର ଖୋଜି ଫିଂପୁଡ଼ିଟାଏ
ନଈ ପହଁରିବାକୁ ସଜହବ !

□□□

# ଧାନ କିଆରୀ

ଭୋଦୁଅର ଧାନ କିଆରୀ
ଆହା, ଆହା
ଛାଇ ସାଂଗେ ଖରାର ଲୁଚକାଳି !

ଅଧେ ଛାଇ ଅଧେଖରା
ହୃଦୟ ମନ ଉତଳା
ତୁମପାଇଁ କ୍ଷଣକେ ଅଭିମାନ ତ
କ୍ଷଣକେ ଉଦ୍‌ବେଳନ
ଏଇଲେ ମୁହଁ ବୁଲେଇ ନବା ତ
ଟିକେ ପରେ ତେର୍ଛି ଚାହିଁବା
ଫୋପାଡ଼ି ଦେବା ତ ପୁଣି ଜଡ଼ିଯିବା !
କେତେ ଲୁଚାଛପା ଅଭିସନ୍ଧି
ଛୁରୀମରା
ଶ୍ୱାନ ଶୃଗାଳଙ୍କ ଧରାପରା
ଅହନ୍ତା କେତେ, କେତେ ଅସ୍ୱୀକାର
ନିଦାରୁଣ ଉପହାସ ବି ନିୟତିର !
ଖାଁ ଖାଁ ନିଷ୍ଫଳତା ଭିତରେ
କି ଆଶ୍ଚର୍ଯ୍ୟ !
ତୁମପାଇଁ ଝୁରିଝୁରି
ଛି' ଛି' କରି
ପାଲଟିଗଲା ଭୋଦୁଅର ଧାନକିଆରୀ
ମୋ ମନ-
କରୁଣ ତ ଉଛନ୍ନ, ଉଛନ୍ନ
କ୍ଷଣକ୍ଷଣ
ଉଦ୍‌ବେଳନ ପୁଣି ଅଭିମାନ...।

❑❑❑

# ଯେ କୌଣସି ପାଣିରେ ନୁହେଁ

ଯେ କୌଣସି ପାଣିରେ
ଯଦି ମେଣ୍ଟି ଯାଉଥାନ୍ତା ଶୋଷ
ତା' ହେଲେ, ଶୋଷ ନଥାନ୍ତା ।
ଏତେ ନଦୀ, ତଡ଼ାଗ ଥାଉଁ ଥାଉଁ
ଠୋପାଏ ବର୍ଷାର ସ୍ୱଚ୍ଛତାକୁ
କାହିଁକି ଅନେଇଁ ବସିଥାନ୍ତା ଚାତକ ?

ଏମିତିରେ
କ'ଣ ନାହିଁ ମୋର ?
ଅୟସ, ବୟସ, ସନ୍ତାନ ସଂସାର
ତଥାପି କେଉଁ ମହାନାଦର ରଣନ
କେଉଁ ସଂଧ୍ୟା ତାରାର କଂକଣ
ମୋର କାମ୍ୟ ?



# ଅମର, ଶୁଦ୍ଧ

ଅନୁଶୋଚନା ଅମର,
କଦମ୍ବ ଡ଼ାଳରେ ଲେପ୍‌ଟି ଥିବା ଆକାଶ
ନଡ଼ିଆ ପତ୍ର ଉପରେ ଝଡ଼ି ପଡ଼ିଥିବା ତାରା
କଢ଼କୁ ସାରାରାତି ଖାଉଥିବା ପୋକ
କସ୍ତା ଖଣ୍ଡକରେ ବାନ୍ଧି ହୋଇଥିବା ଦେହମୋର
ଏମାନେ ସମସ୍ତେ ଅମର ।

ଅମର ପୁଣି ଶୁଦ୍ଧ
ଲେଲିହାନ ଅଗ୍ନିମଝିରେ
ଜର୍ଜରିତା ମୈଥିଳୀ
ନହେଲେ ଆଉଟା ସୁନାପରି ।

ମରିବା ବି କ'ଣ ?
ମରିସାରି ଥିବା ଲୋକେ
ହଜାର ବାର କଥା ହେଉଛନ୍ତି ମୋ ସାଂଗେ
ଚାଲିଯାଉଛନ୍ତି ମୋ ପାଖଦେଇ
ହସି ହସି ଭାବ ଲଗେଇ ।
ଅଠାବନ ବର୍ଷ ଭିତରେ ନିହାତି
ଆଠ ଥରରୁ ବେଶି ମରିଥିବି ମୁଁ
ମରିବା ବି ଗୋଟେ କଳା
ଯେମିତି ଅନ୍ୟ କଳା ସବୁ !

ଆଉ ଶୁଦ୍ଧତା ?
କେତେ ଯେ ପ୍ରତୀକ ତା'ର !
ସବୁ କିନ୍ତୁ ଆପେକ୍ଷିକ,
ଯେମିତି ଶୁଭ୍ରତାର ଛାତିରେ
କିଏ ଛିଂଚାଡ଼ି ଦେଇଚି
ସ୍ୟାହି ମୋଞ୍ଚାକ !

❑❑❑

# ପ୍ରେମିକର ଶବ

ମରିଗଲେ ଯେ ସରିଯାଏ
ତା' ନୁହେଁ-

ମରିଯାଇଥିବା ମୋ ନିଜ ଲୋକଙ୍କୁ
ଥରକୁ ଥର ମୁଁ
ଡାକିଆଣେ ପାଖକୁ
ଯେ କୌଣସି ସମୟରେ, ସହଜରେ
ତାଙ୍କ ହସକଥା
କ୍ରୋଧ ବ୍ୟସ୍ତତା
ସବୁକୁ ଭୋଗ କରେ
କେବେ ମନ ପୂରେ ତ
କେବେ ହା' ହା' କରେ ।

ଇଚ୍ଛା ହେଲେ
ତାଙ୍କୁ ଛାଡ଼ିଦିଏ ସେଇଠି,
ସେମାନେ ଉଭାନ୍ ହେଇଯାଆନ୍ତି ତତ୍‌କାଳ ।
ଅଥଚ
କୋଉକାଳୁ ମରିସାରିଥିବା ମୋର ପ୍ରେମିକ
ନ ଡାକିଲେ ବି ଆସେ,
କ'ଣ ସବୁ କହେ
ଚାଟୁ ବୋଳେ କି ଚାକୁ ଫିଙ୍ଗେ
ମୁଁ କର୍ଣ୍ଣପାତ କରେନା, ଏଡ଼ାଇଯାଏ
ହସେ କି ଲୁହ ଦର୍‌ଦର ହୁଏ
ମୁଁ ଅନାଇଁ ଯାଏନା-

'ଯାଆ' କହିଲେ
ଠିଆ ହୋଇଥାଏ ସେଇଠି

ନୂଆ ନୂଆ ଧୂଆଁ ଧୂଆଁ ଦିଶେ ।
ମୁଁ ଅବଶ୍ୟ
ଆଦୌ ନିରେଖିବାକୁ ଯାଏନା
ଆଶ୍ଚର୍ଯ୍ୟ !
'ମରିବା' କଥାଟା ତେବେ କଅଣ ?
ପୋଡ଼ିଦେବା ନହେଲେ ପୋତିଦେବା ତ ?

ହେଲେ, ମୁଁ ତାକୁ
ପୋଡ଼ିପାରିନି କି ପୋତି ପାରିନି
ସେଇଥିପାଇଁ ବୋଧେ
ଜିଦ୍‌ଖୋର୍ ସେ, ମନମୁଖୀ ।

ନ ପୋଡ଼େଁ କି ନ ପୋତେଁ
ଏଥର ଯାଉଚି
ନଈ ସମୁଦ୍ର କି ବଣପାହାଡ଼
କୋଉଠି ହେଲେ ତାକୁ ଫିଙ୍ଗି ଦେବି ।

❑❑❑

# କବିତାକୁ ଝୁରି ହେଲେ

ଭଲ ହୁଅନ୍ତା କବିତା ନ ଲେଖିଲେ ।

ସୁନାରଂଗ ମହୁମାଛିଙ୍କୁ ସକାଳ
ଛାଟି ଦିଅନ୍ତା ନାହିଁ ଆମ୍ବତୋଟା ସାରା,
ଝଡ଼ା ପତ୍ର ଉପରୁ
ଡଗଡ଼ଗ କାଇ ପିଂପୁଡ଼ି
ଉଭାନ୍ ହୋଇ ଯାଆନ୍ତେ ନାହିଁ ହଠାତ୍
କଳିଜାରେ ଲମ୍ବା ଚୌଡ଼ା ଶୂନ୍ୟତାକୁ ଝୁଲାଇ
ଚାଲିଗଲା ବେଳେ
ଟଙ୍କା ସୁନାର ଗହଗହ ବଜାର ଉପରେ
ଏତେ ଅଲଗା ଲାଗନ୍ତା ନାହିଁ-

ସବୁ ଛକାପଂଝା
ନେଣଦେଣ ଖେଳ ମଝିରେ
ଅପ୍ରସ୍ତୁତ ହୋଇପଡ଼ନ୍ତା ନାହିଁ
ହାତଗୋଡ଼
ଅଣ୍ଡାଳି ହୁଅନ୍ତା ନାହିଁ କବିତା, କବିତା ।

ଅଧାବାଟ ନ ହେଉଣୁ
ଲାଗନ୍ତା ନାହିଁ ଏକାଏକା-
ମରି ସାରିଥିବା ମର୍ଦ୍ଦଟେ
ପହରା ଦିଅନ୍ତା ନାହିଁ ଦିନରାତି
ମୋ ଦାଣ୍ଡ ଦୁଆରେ,
ଖାସ୍ ମତେ ଚାହିଁ
ଆଖି ମାରନ୍ତା ନାହିଁ ତାରାଟେ
କିଦ୍‌ଖୋର ଜହ୍ନ
ଚାଲନ୍ତା ନାହିଁ ମୋ ପଛେ ପଛେ ।

ବଡ଼ ଦିକ୍‌ଦାର୍ ଲାଗେ
ଶୋଇ ହୁଏନା କି ଚେଇଁ ରହିହୁଏନା,
ଶୋଷକୁ ପାଣି ମୁନ୍ଦାଏ
କି ଭୋକକୁ ଭାତ ଗୁଣ୍ଡାଏ
କି ଫୁଙ୍ଗୁଳା ଦେହକୁ ଲୁଗାବକଟେ
ସଜାଡ଼ି ହୁଏନା ଠିକ୍ ମତେ ।

ବଂଚିହୁଏନା କି ମରିହୁଏନା
କବିତାକୁ ଝୁରିହେଲେ-



# ମେଘଦୂତ

ଧାନ ଶିଁଷା ଉପରେ
ଡେଣା ଝାଡୁଛନ୍ତି
ଯେ ବଗପଲ
ନାଁ କାଶତଣ୍ଡୀ ଫୁଲ ?

ଅନେଇଁ ଦେଲେ ହିଁ ଆକାଶ-
କେତେ ହାତୀ, ଘୋଡ଼ା, ଅଜଗର
ଏଇଲେ ଯୁବାଝିଅର ଅଲରା ମୁକୁଳା ବାଳ
କେବେ ପୁଣି ଲହୁଣୀ ତ
କେବେ ଦୁଧଫେଣ,
ମେଘର ଅଛି କି ମୋ ପରିକା ମନ ?

ମେଘକୁ ପଚାରିଲି ମୁଁ
ଯିବୁ, ତାଙ୍କ ପାଖକୁ ?
ଯିବାର ଅଭ୍ୟାସ ଅଛି ତୋ'ର
ଯିବୁ କି ?
ମେଘ ମୁହଁ ମୋଡୁଚି ।
'ଦୂତ ହେବା ଝକ୍‌ମାରି, କହନା ମତେ
ଏବେ କରାମତି ଯେ
ଇ-ମେଲ୍, ଇଣ୍ଟରନେଟ୍, ଡାକବାକ୍ସର !'

ତୁମକୁ ଚିଠି ଖଣ୍ଡିକ ମୋ'ର
ଛାତି ଭିତର କୋଣରେ
କାଗଜ ଫର୍ଦ୍ଦକ ଭାଙ୍ଗିଭୁଙ୍ଗି
ଥୋଇ ଦେଇଚି ମୁଁ
ବିହ୍ୱଳତା, ପୀଡ଼ା

ନୀରବତା କେତେ କେତେ
କେବେ ଅବା ଧାଡ଼ିଏ କବିତା
ଅଥଚ ଭୁଲି ଯାଇଚି, ଭୁଲିଯାଇଚି ।

❑❑❑

# ଶ୍ୟାମାଙ୍ଗିନୀ, ତୋତେ ଲେଖୁଚି (୧)

ଭରାକଳସୀ ଧରି ସ୍ତ୍ରୀ ଲୋକଟେ
ଭାରି ଗର୍ଭକୁ ବୋହି
ଶାମୁକାଟିଏ ।

ପାଦପଡ଼େନା ସହଜରେ
କାହାନ୍ତି ବା ସେ
ଆଂକୁଳେ ପାଣି ଆଉ
ଚକ୍‌ମକ୍ ମୁକ୍ତାଟିର
ନିରାପତ୍ତା ପାଇଁ
ପଠାଇଦିଅନ୍ତେ କେତେକେଜାଣି
ପ୍ରତିରୋଧର ଅସ୍ତ୍ର
ଶ୍ୱାନ, ନିଆଁ
ନ ହେଲେ ଭୁଜଙ୍ଗ ଆଉ ଝଡ଼ ।

ମୃଗୟା-ପଟୁ ଚାହାଣିରୁ
ଉତୁରି ପଡୁଥିବା ଲୋଭ
ବୁଝନ୍ତା କେବେ
ତୋ ସ୍ନେହ ଲୁହର ଅଭିଯୋଗ !

ହେଲେ ବି
କଥାଟିଏ ମନେରଖିଥା-
ବର୍ଷାରେ ଗଳଗଳ
ସରିଯାଉଥିବା ବଉଦ,
ତାଡ଼ି ବିଦାରି ହେଉଥିବା
ରତ୍ନଗର୍ଭା ପୃଥ୍ୱୀ,
ଫୁଲ ଫଳ ଅଜାଡ଼ି
କୁରାଢ଼ୀ ଚୋଟରେ

ଛିଡ଼ିଯାଉଥିବା ବନସ୍ପତି
ଏସବୁ ଯେ
ତୋର ପ୍ରତୀକତା କରନ୍ତି !

ଆଂଜୁଳେ ଜଳ
ଫୁଲ ଫଳ
ରତ୍ନ ଆଉ ଅନୁରାଗ
ଅଛି ବୋଲି ତ
ଚନ୍ଦ୍ରସୂର୍ଯ୍ୟ ଆତଯାତ ହୁଅନ୍ତି ।

❑❑❑

# ରତ୍ନ ତ ରତ୍ନ

ଝିଅ ଦେଖିଛୁ, ମନୁ ?
ଦେଖିଛୁ ତ ଝିଅକୁ
ପଚାଶଟା ପାହାଚ ଚଢ଼ିସାରି ବି
ଦର୍ପଣ ପରି ଝଲସି ଉଠୁଛି
ଯାହା କପାଳ
ବିଶ୍ୱାସରେ ପଦ୍ମ ଫୁଟୁଛି ଯାହାର ?

ବିଦିଶାର ରାଜରାସ୍ତାରେ
ନିଷ୍ପ୍ରଭ ବତୀଖୁଣ୍ଟ ତଳେ
ଝଡ଼ି ପଡୁଛନ୍ତି ଅଜସ୍ର ପୋକ
ପାନପାତ୍ରରେ ଭାସି ଉଠୁଛି ଯା'ର ମୁହଁ
ସେ କେହି ନୁହଁ-

ଗୁମ୍‌ସୁମ୍ ଗୁମ୍ଫା ଭିତରେ
ଲୁଚି ବସିଛି ଅନ୍ଧାର
ମୁହଁ ଢାଙ୍କିଛି ବୁଦ୍ଧଙ୍କ ଉତ୍ତରୀୟରେ
ପାଣି ଆଉ ପଥରର କଥା ଭାଷା ମଝିରେ
ଚେଙ୍କି ଉଠୁଛି ସ୍ୱର ଯାହାର
ସେ କେହି ନୁହଁ-

ଘୃଣା ଅସୂୟାକୁ, ତରବାରୀକୁ
ଆଗୁଳି ରଖିଛି ଯୋଡ଼ ହାତ
ମନରୁ ମନକୁ ଖିଅ ଯୋଡ଼ିଛି
ଯୋଡ଼ ହାତ
ସେ ହାତକୁ ମୁଠେଇ ଧର୍, ମନୁ,
ଛାଡ଼୍ ନାଇଁ କେବେ ବି

ଅଜନ୍ତାର ଗଳା ବେଢ଼ାଇ
ଝୁଲି ପଡ଼ିଚ୍ଛି ଯୋଉ ମେଘ ଖଣ୍ଡକ
ଆଉ କେବେ ବି ଆସିବ ନାହିଁ ସେ
ଛାଡ଼ି ଦେ, ଜଳାନା ତାକୁ ଆଜିକେ ।

ଗୁଂଫା ଭିତରର ରତ୍ନ ।
ଅସମୟ ସମୟ କ'ଣ ?
ରତ୍ନ ତ ରତ୍ନ
ରତ୍ନ ଦେଖିଚୁ, ମନୁ,
ଦେଖିଚୁ ସେ ଝିଅକୁ ?

□□□

# ଯିଏ ଅଟକିଗଲେ ବାଟରେ

କେତେ ସରାଗରେ
ହାତ ଧରି ଚାଲିଥିଲି ।
କିଏ, ମତେ ଡାକିଥିଲା ତ
ଆଉ କାହାକୁ
ମୁଁ ଡାକିଥିଲି ।

କାହାପାଇଁ ବାଙ୍ମୟ କଜଳ
ରଞ୍ଜି ଦେଲି ଆଖିରେ
କାହାପାଇଁ
ନିଆଁ ପରି ସିନ୍ଦୂରଗାରରେ
ଜଳାଇଲି ସୀମନ୍ତ
ଗର୍ଭକଷ୍ଟ ସହିଲି କେବେ
ଦେହରେ ତ କେବେ ମନରେ
କେବେ ଦଶମାସ ତ
କେବେ ଦଶବର୍ଷେ ।

ଜହ୍ନରାତିର
ମୁଖର ଗୁଂଫା ଭିତରେ
ଗୀତ ଗାଇଲି କେବେ ତ
ସବୁଯାକ ଦର୍ପଣ ଚୁନାହେଇ
ଭାସୁଚି ଯୋଉ ସମୁଦ୍ରରେ
ତା' ଫେଣ ଉପରେ
ଲେଖିଲି ନିଜ ନାଆଁ
ଆକାଶକୁ
ହାତ ବଢେଇ ଦେଲି ତ
ସୂର୍ଯ୍ୟ, ଚନ୍ଦ୍ର ଡେଇଁ ପଡ଼ିଲେ କୋଳକୁ

ପବନ ଯେ
ବେଢାଇ ଧରିଲା ମୋର ଗଳା ।

ମୁଁ କିନ୍ତୁ
ଚାଲିଲି ସବୁବେଳେ ଆଗକୁ ।
ଅହଂକାରରେ ଅଧିକାରରେ
ପାଗଳହେଲେ ସେମାନେ ।
କିଏ କହିଲା
ସାଇତିଦବ ସୁନାସିନ୍ଦୂକରେ ତ
କିଏ କହିଲା
ଶୋଷିନେବ ଗଣ୍ଡୁଷରେ ।

ମୁଁ ଯେ ଅଙ୍କୁରୋଦ୍‌ଗତ ବୀଜ,
ମୁଁ ଯେ ରସୋତ୍‌ଫୁଲ୍ଲ ନଦୀ
ଭଲା କେମିତି
ଅଟକି ରହିଥାନ୍ତି ବାଟରେ !

❑❑❑

# ପଞ୍ଚପ୍ରିୟଙ୍କୁ

ବର୍ଷକ ପରେ
ଜଣେ ଲେଖାଁ
ଆସନା,
ପାଞ୍ଚଜଣଯାକ
ଏକାବେଳକେ ଆସ,
ବିଶ୍ୱାସକର, ବଂଚିପାରିବି ନାହିଁ ମୁଁ
କାହାକୁ ଜଣକୁ ବି ଛାଡ଼ି
ଦିନଟେ ।

ଖିଏ କାଶତଣ୍ଡୀ ପରି ନକ୍ ନକ୍
ଏ ଦେହର ଚଅଁର
କେତେ ଦାଗ, ଧୂଳିରେ ଘୋରାଘୋରି,
ତଥାପି ସଧ ତୁମର
ପାଞ୍ଚଜଣଯାକର !

ସଡ଼ସଡ଼ ଘାଆରୁ, ଅଥର୍ବ ହାତଗୋଡ଼ରୁ
ମୁଁ ଚିହ୍ନିସାରିଚି ଏ ଦେହର ସବୁଜତାକୁ
ବୁଝିସାରିଚି ପାଞ୍ଚଜଣଙ୍କ ଅହନ୍ତାକୁ

ତେବେ ବି
ମୁଁ ବିଛେଇ ଦେବି
ଦର୍ପଣ ପରି ଝକମକ ଦେହ
ଜାମୁପତ୍ରର ଧାର ପରି ନାସାଗ୍ର
ଅଥଯ ଗୋଲାପି ମାଛଟେ ପରି ଜିଭ
ଉଦ୍‌ଗ୍ରୀବ, ଚଞ୍ଚଳ ହରିଣୀର କାନ
ସ୍ଫଟିକ ପାତ୍ରର ପାନୀୟ, ଆଖିର ଆବାହନ

ଆସ, ଏଥର
ସାବ୍ୟସ୍ତକର
ନିଜ ନିଜର ଅଧିକାର ।

ଈଶ୍ୱର ? କୌଣସି ଆପତ୍ତି ନାହିଁ ତାଙ୍କର ।
ସେ ତ ମୂଳରୁ ଆଡେଇ ଯାଇଚନ୍ତି ମତେ
ଅଥଚ
ତୁମେମାନେ ତ ଜାଣ
କେତେ ଛଟପଟ ମୋର
ଆଖିଦାଢ଼ରେ ଲୁହ
କେତେ ପଡ଼ିଉଠି ଧାଇଁବା
ତାଙ୍କୁ ହିଁ ଖୋଜି
ବଣରୁ ଉଆସ
ଉଆସରୁ ବଣ ।

ଉଆସରେ କି ବଣରେ ଥାଏଁ ମୁଁ
ପ୍ରସ୍ତୁତ ହୁଏ
ଅଗତ୍ୟା ବାଣ୍ଟିଦବାକୁ ନିଜକୁ
ପାଞ୍ଚଖଣ୍ଡକରି
ତା'ପରେ ବାହାରିଯିବାକୁ
ଜ୍ୱଳନ୍ତ ଖଡ୍‌ଗଟେ ପରି
ମୋ ନିଜ ଭିତରୁ
ମହାଶୂନ୍ୟର ବାହୁବେଢ଼କୁ ।

❑❑❑

# ଡରିଯାଆନ୍ତି ଈଶ୍ୱର

ଷାଠିଏଟି ଆଲୋକବର୍ଷରେ ପାଦଥୋଇ
ସ୍ତ୍ରୀଲୋକଟେ ଅଣ୍ଡାଳି ହଉଛି
ଛକଜାଗାରେ
ଏତେବଡ଼ ମହାଦେଶର
ଦକ୍ଷିଣରେ ।

ଗହଗହ ମାଣିକ୍ୟର ବଜାର
ପୃଥୀଟାକୁ ବିକିଭାଂଗି ଖାଇଯିବାକୁ
ତିଆର୍ ଲୋକେ
ଚାଲିଯାଉଛନ୍ତି ବାଟଭାଂଗି,
ଯା ଆସ କରୁଛନ୍ତି
ଦିନକୁ ଲକ୍ଷେ ସୌଦାଗର, ସେଇଠି
ସ୍ତ୍ରୀ ଲୋକଟେ ଧନ୍ଦି ହଉଚି
ତା'ର ବୋଲି ଘରଟେ ଅଛି କୋଉଠି
ସେ ବାଟ ଖୋଜୁଚି-

କେଇହାତ ଛଡ଼ାରେ
ସମୁଦ୍ରରେ ଭାଂଗିପଡୁଚି ଅସରନ୍ତି ନୀଳ
ପ୍ରବାଳ ଲତାରେ ଧକ୍‌ଧକ୍ ହଉଚି ଜୀବନ
ସଂସାରର ଖରାତରାକୁ ଅଂଗେ ନିଭେଇ
ସ୍ତ୍ରୀ ଲୋକଟି ଫେରିଯିବ, କହୁଚି-
କୋଉଠି ତାର ଘରବଖରାଏ ଅଛି,
ଅଛି ସତ୍ୟର କଷଟି
ସେଥିରେ ନିଃଶ୍ୱାସକୁ ତାର
କ୍ଷଣକୁକ୍ଷଣ ସେ ପରଖିଚି ।

ପାଗଳୀ ନାଁ ବିଟପୀ
ନାଁ ସିଦ୍ଧ ଦେବୀ
କିଏ କେଜାଣି ସେ ମାଇପୀ
ତାକୁ ରାସ୍ତା ଧରାଇବାକୁ
ଠିଆ ହେବାକୁ ତା ପାଖରେ
ଈଶ୍ୱର ବି ଡ଼ରିଯାଆନ୍ତି ।

❑❑❑

# ତାରା

ଖୁବ୍ ଉଚ୍ଚରେ ଝଲ୍‌ସୁଥିବି, କହୁଚ-
ପତ୍ର ଅଗରେ
ବର୍ଷାପାଣି ଠୋପାଏ ପରି ନୁହେଁ
କି କିଶୋରୀର
ନାସାଗ୍ରର ଛୁରୀ ପରି ନୁହେଁ
ଘନଘୋର ପ୍ରପାତ ଉପରେ
ଲାଖିଥିବା ଇନ୍ଦ୍ରଧନୁ ପରି ବି ନୁହେଁ
ତେବେ କାହାପରି ?

ଦେଖୁନାହ
ଶୂନ୍ୟରେ କଂପୁଚି
ଧପ୍‌ଧପ୍ ଜଳିଉଠୁଚି ମୋର ଆତ୍ମା
ଆଲୋକ ବର୍ଷ ବର୍ଷ ବ୍ୟାପି
ଦୂରତାରେ ତୁମଠୁଁ
ମୁଁ ଏମିତି ଜଳି ଲାଗିଚି
ମଧୁର ତାରକିତ ରାତିରେ
ଡାକି ଲାଗିଚି ସ୍ୱରଟିଏ
ଠିଆହେଇ ଛାୟାପଥ ମଝିରେ ।

ଲାଳସା ଆଉ ମିଥ୍ୟାଚାରର
ଅନ୍ଧାର ଭିତରେ
ସ୍ଥିର ବିଶ୍ୱାସର ଆଲୋକ ଛାଟୁଥିବି
କହୁଚ
ଅନଶ୍ୱରତାର ଲୁହବୁନ୍ଦାଏ
ଝୁଲି ରହିଥିବ ଛାତିରେ-
ଏଣେ ଯେ

ତଣ୍ଟି ଶୁଖି ଯାଉଚି
କଂପିଉଠୁଚି ହୃତ୍‌ପିଣ୍ଡ ମୋର
ତଥାପି,
ଖୁବ୍ ଉଚ୍ଚରେ ଝଲ୍‌ସୁଥିବି, କହୁଚ
ସୁଦୂର ଆକର୍ଷଣର
ଏକମାତ୍ର ପ୍ରତୀକ ହେଇକି !

❑❑❑

# ଶ୍ୟାମାଙ୍ଗିନୀ, ତୋତେ ଲେଖୁଚି (୨)

ଥିଲା କିଛି ତା'ଠି ?
ଉଡୁଥିଲୁ ବୁଡୁଥିଲୁ ଯେ
କ'ଣ ଥିଲା ତା'ଠି ଏମିତି ?

ଆକାଶ ମଝି
ବାଦଲର ଭାସମାନ ଗୁମ୍ଫା ଭିତରେ
ରହସ୍ୟଟେ ହୁଏତ
ସୁରଧରି ଗାଉଥିଲା କିଛି
ଆଉ ତୁ, ଉତ୍ତାଳ ହେଲୁ
ସାରା ପୃଥିବୀ ସତେବା ଶୂନ୍ୟ
ନିକାଞ୍ଚନ
କେବଳ ରଂଗ ଅଛି
ପ୍ରାଣ ଅଛି ସେଇଠି
ସୁର୍ ତ ନୁହେଁ, କାଉଁରି କାଠି !

କେତେ ଅମର୍ଯ୍ୟାଦା, ଧିକ୍‌କାର
ତାଚ୍ଛଲ୍ୟର ହି' ହି' କାର
ସଜଫୁଲ ଛାତିରେ ଅଂଗାରର ଗାର
କେମିତି ସହିଗଲୁ, ବଂଚିରହିଲୁ କେଜାଣି
ଭାଂଗି ପଡ଼ନ୍ତେ
ଧୂଳିସାତ୍ ହୁଅନ୍ତେ
ଈଶ୍ୱର ।

ଶ୍ରୀଅଙ୍ଗରେ ତୋର
କେତେ ଧୂଳି, କେତେ ପ୍ରହାର
ଆତ୍ମା ଫୁଟି ବିଷାକ୍ତ ଶର,
ଲୁଚି ରହିଲା କୋଉଠି

ନିଜକୁ ବଂଚାଇ ପାରିଲା
ସବୁତକ ଦରଦ ତୋର !

ସେ ଥିଲା ନିମିତ୍ତ ମାତ୍ର ।
ବୋଧହୁଏ
ମୁହୂର୍ତ୍ତର ମହୁଠୋପାଏ
ଧାଡ଼ିଏ ଅନ୍ୟମନସ୍କ ଖରା
ଅର୍ବୁଦ ଅର୍ବୁଦ ଦାବୀପତ୍ର ତାର
ସାର୍ବଭୌମ ଯେମିତି
ତାର ଅଧିକାର-

ଦେଇ ଜାଣେନା, ସହି ଜାଣେନା ସେ-
ଲୁହ ପୋଛି, ସାଇତି ଜାଣେନା କିଛି
ଘୂର୍ଣ୍ଣିବାତ୍ୟାର ପ୍ରଚଣ୍ଡ ପ୍ରକୋପ ସେ
ପ୍ରଜାପତିଟେ, ଚଢେଇଟେ
କି ନବନାରୀଟେ
ପଡିଯାଉ ତା ସାମ୍ନାରେ
ଦଳି ଚକଟି ଦବ ସେ
ନ ରହେ ଆଉ ଅବଶେଷ ଯେମିତି !

ଜାଣେ, ଜାଣେ
କିଛି ନଥିଲା ତା'ଠିଁ ।
ଭୟଙ୍କର ରହସ୍ୟ କେବଳ
ଜୀବନମରଣର ଚାବିକାଠି ।



# ଲେଖା ହେଉନି

ସାରାରାତି ଲେଖା ଚାଲିଚି
ମଣିମୁକ୍ତା ପରି ଗୁନ୍ଥା ଚାଲିଚି ଶବ୍ଦ
ଗର୍ଭବତୀ ହରିଣୀର ଭାବଛନ୍ଦ
ସମୁଦ୍ରରୁ ବୁନ୍ଦା ବୁନ୍ଦା ସନ୍ତାପ
ଗୁନ୍ଥା ଚାଲିଚି, ଚାଲିଚି—

ସରି ଆସୁଥିବା ପ୍ରାଣୀମାନଙ୍କ ନିଃଶ୍ୱାସ
ସଂଶୟ ଅନ୍ଧାର ଘୋଟିଥିବା ଭବିଷ୍ୟ
ସ୍ୱପ୍ନଠୁଁ ବାସ୍ତବଯାଏଁ ଲମ୍ବିଥିବା ଛାୟାପଥ
କେତେ ଯେ ଲେଖା ଚାଲିଚି ମୋର,
ଫାଟି ଆସିଲା ବେଳକୁ ରାତି
କାଗଜ ଫର୍ଦ୍ଦକ
ଯୋଉ ଧଳାକୁ ସେଇଧଳା, ସେମିତି—

କେତେ ଲକ୍ଷ୍ୟ, କେତେ ଉଦ୍ଦେଶ୍ୟ
କେତେ ତୃପ୍ତି, କେତେ ସନ୍ତୋଷ
ପ୍ରାଣ ପାଇପାରିନି,
କୋଉ ଗୋଲାର୍ଦ୍ଧରେ କେଜାଣି
ଅଟକି ଯାଇଚି ସବୁ
ଆଂଜୁଳାଏ ପାଣି, ମୁଠାଏ ମାଟି, ଟୁକୁରାଏ ପବନ
ଗାରେ ଚଢ଼େଇଙ୍କ ଚଲାପଥ
କିଛି ଆଂକି ହେଲାନି
ସଜାଡ଼ି ହେଲାନି ଧାଡ଼ିଟେ
ପଥର ପାଲଟିଗଲା ସ୍ୟାହି
ଫାଙ୍କା ରହିଗଲା କାଗଜ ।



# ଫେରିଆସିବା

ଫେରି ଆସିଚି ସେ,
ନିର୍ଘାତ ପାଗଳ ପରି
ଝୁରି ଝୁରି ପହଂଚିଚି
ଛାଡ଼ି ଆସିଥିବା ଆବେଗରେ ଭୂମିଠିଁ,
ଭୁଲି ନାହିଁ ସେ,
ଅଥଚ, ଲିଭିଯାଇଥିବା ଅକ୍ଷର ଭଳି
ଥିଲା ତା'ର ବିଚ୍ଛେଦ ।

ଉତ୍ତରର
ମାଇଲ୍ ମାଇଲ୍ ପାଇନ୍ ଜଂଗଲ
ସେଠିକୁ ଫେରି ଆସିଚି ସେ-
'ବିଦାୟ' ନ କହି
ସେ ଦିନର ଅପରାହ୍‌ଣକୁ ଫିଙ୍ଗି ଫୋପାଡ଼ି
ସଂଧ୍ୟାତାରାକୁ ପଦାଘାତ କରି
ମୁହଁ ଫେରାଇ ନେଇଥିଲା ସେ
ଫୁଲଭର୍ତ୍ତି ବୁଦାଭଳି ମୁଁ
ବିଛେଇ ଯାଉଥିଲାବେଳେ

ଛପିଥିବା ଅନ୍ଧାରୀ ଝରଣା ପରି
ନବଚିହ୍ନିତ ଛାୟାପଥ ପରି
ଭଲ ପାଇବାର ଦିକ୍ ଦିକ୍ ନିଆଁ ଭଳି
ପ୍ରଥମ ବର୍ଷାର ବାସ୍ନାପରି
ଦକ୍ଷିଣାର ନିଃସଂଗ ପୁଲକ ପରି
ସେ ଫେରି ଆସିଛି ।

'ବିଦାୟ' ବୋଲି କହି ନଥିଲେ ବୋଧେ
ପୁଣି ଲେଉଟି ଆସିବାକୁ ହୁଏ ।

❑❑❑

# ଜଳୁନାହିଁ, ଲିଭୁନାହିଁ

ପାଇନ୍ ଜଂଗଲ ଗହୀରରେ ଏଠି
କୋଳ ଭର୍ତ୍ତି କୁହୁଡ଼ି
ଲାଗୁଛି
ସମୁଦ୍ରଟେ ଶିର୍ ଶିରେଇ ଡାକୁଛି
ଦିଶୁନାହିଁ, ଶୁଭିଯାଉଛି ।

ବୋତାମ ପରି ମୋର ଦୁଇ ଆଖି
ନା ମହକ ନା ଡହକ ଅଛି !
ତଥାପି, କୋଉଠି ଗୋପ୍ୟ ରହିଛି
ଖିଏ ଖରା
ଧାରେ ଜହ୍ନ
ଧାପେ ବିପୁଳତା
ବ୍ରହ୍ମାଣ୍ଡ ସାମ୍ନାରେ
ପିମ୍ପୁଡ଼ିଟିର କ୍ଷମତା
ମହାପର୍ବତ ଭିତରେ
ଟିପେ ଅଂଧାର
ଋଷି କଣ୍ଠର ନୀରବତା ।

ବୋତାମ ପରି ମୋର ଦୁଇ ଆଖି
ତେବେ ବି ଜଳୁନାହିଁ, ଲିଭୁନାହିଁ
କୋଉ ଲୋଭରେ କେଜାଣି
ଏଠାରୁ 'ଯିବନାହିଁ' 'ଯିବନାହିଁ' କହୁଚି ।

❑❑❑

# 'ଫାଗୁ'ରେ ବର୍ଷା

ରାତିର ଅଜସ୍ର ନକ୍ଷତ୍ରଙ୍କୁ
ବାନ୍ଧି ରଖିଚି ଡ଼ାଳରେ
ହିମାଚଳ,
ତାର ଗଛପତ୍ରକୁ
ଓହ୍ଲାଇ ଆସନ୍ତି କିନ୍ନରୀ ଦଳ ।

ଘାସର ଗୋଡ଼ିର ଲନ୍ ଭିତରକୁ
କିଏ ଫିଙ୍ଗି ଦଉଚି
ମୁଠା ମୁଠା ଗଜମୋତି
ଫାଗୁରେ ବର୍ଷା ହଉଚି-
କର୍ପୂର ଗଢା ଝିଂକାରୀ ଦଳ
ଫକ୍ ଫକ୍ ଡେଉଁଛନ୍ତି ସତେକି !
ବଉଦର ଛାତିପକେଟ୍‌ରେ
ଲୁଚି ପଡ଼ିଚି ଅଚଳ
କେବେ ବା ବଉଦକୁ କୋଳକରିଚି
ପାହାଡ଼ ମାଳ ।

ତରୁଣ ଝୀନ ବଉଦ
ମୋ ଝର୍କା କାଚରେ ମୁହଁ ଘଷୁଚି
ପଶି ଆସିବ, ପଶି ଆସିବ ହଉଚି ।
ପାଇନ୍ ଜଂଗଲର ବିସ୍ତାର
ଆଗକୁ ଦିଶୁନି କିଛି
ସମୁଦ୍ରଟେ
ଗର୍ଜୁଚି କୋଉଠି
ଶୁଭୁଚି ତାର ମର୍ମର ।



(ହିମାଚଳ ପ୍ରଦେଶ 'ଶିବାଲିକ୍ ରେଂଜ୍'ର ଏକ ପର୍ଯ୍ୟଟନ ସ୍ଥଳୀ, ସିମ୍‌ଲାଠାରୁ ଅଧିକତର ଉଚ୍ଚରେ ଅବସ୍ଥିତ ।)

# କାଗଜ ଟୁକୁରାଟିଏ

ମଣିଷର ଯେ ଭ୍ରୁଣ
କୋଉଠୁ ସଂଚରେ ସତେ
ସାତ ପରସ୍ତ ଚର୍ମର ଘେର ଭିତରେ
ମା' ପେଟରେ ?

ବାଲି ଉପରେ
ନଖ ଦାଗର ଆୟୁଷ ଏ ଜୀବନର,
କ'ଣ ହବ ବୁଝିଲେ
କୋଉ ରାଶି ନକ୍ଷତ୍ରରେ ତା'ର ଜନ୍ମ
କୋଉ ତାରାରେ ତା'ର ମରଣ !

ତାରାଟିଏ ତ ତାରା,
ନଡ଼ିଆ ବାହୁଂଗା ଭିତରେ
ଜୁଳୁଜୁଳୁ ଗୁଣ୍ଡୁଚି,
ବା ଝକ୍‌ମକ୍ ଛପାଜରିରୁ ଖଣ୍ଡେ
ଦେଉଳର ନେତ ଉପରେ ସତେ କି !
ବାସ୍ ସେତିକି ।

କ'ଣ ମିଳିବ ଯୋଡ଼ିଦେଲେ
ବିପୁଳ ବିରାଟ ସାଂଗେ
ଯେ କାଗଜ ଟୁକୁରାଟିଏ ?

□□□

# ଗୋଧୂଳି

ଅଙ୍କଟିଏ ବଦଳିଗଲେ ହିଁ
ବଦଳି ଯାଏ ଶତାବ୍ଦୀ
କୁଆଁରଡ଼ିରୁ କୋକେଇ
ପୃଥ୍ୱୀ ଘୂରୁଥାଏ ମନକୁ ମନ
ଏଣେ ଜଳୁଥାଏ ବସ୍ତ୍ର ତା'ର
ଖୁଣୀର ସଂତ୍ରାସୀର ଧାତବ ହାତ
ଖିନ୍ ଭିନ୍ ଶରୀର ।

ଚେନାଏ ଶ୍ୟାମଳ କୋଉଠି
ମିଠା ପାଣିର ଧାର
ଲୁଚାଛପା କଥାଭାଷା
ଧାଡ଼ିଏ ଚଢ଼େଇଙ୍କର-

ମତଲବୀ ମଣିଷ, ତାର ବଡ଼ପଣ
ଚିରଂଜୀବନର ନିଧଡ଼କ ଆସ୍ଫାଳନ
ମତାନ୍ଧର ରକ୍ତନଦୀ
ଟହ ଟହ ଯୋଗିନୀଗଣ
ହୃତ୍‌ପିଣ୍ଡରେ ଅଗ୍ନିବାଣ—
ଏତେ ରକ୍ତ ଅଛି କୋଉଠି
ନିଗିଡ଼ି ବୋହିଯାଉଚି ରକ୍ତନଦୀ
ତଥାପି
ଲୁହ ବୁନ୍ଦାକ, କଥାପଦକ
ଲାଖି ରହିଚି
ଭାରତ ଯୁଦ୍ଧରେ ଭରତିଆ ପକ୍ଷୀ ସତେକି !

ପୃଥ୍ୱୀ, କେତେ ପୁରୁଣା ହେଲେ ବି
ସରି ସରି ଗଲେ ବି

ଶୁଖିବ ନାହିଁ ଲୁହ ବୁନ୍ଦାକ ତୋର ?
କ୍ଷୀର ଠୋପାକ ଝୁଲି ରହିଥିବ ବୃନ୍ତରେ
ମୁକ୍ତାପରି ଠପ୍‌ଠପ୍
ଖସୁଥିବ ଶବ୍ଦ କେତୋଟି
ଅଥଚ ଫାଟି ଯିବ ନାହିଁ
ତୋର ଶାମୁକା ଛାତି !

ନିଦାରୁଣ ଅସ୍ତକାଳର ଗୋଧୂଳି ମୁଁ
ଆବୋରିଚି ଆକାଶଘୋଟି
ଚକ୍ରବାଳର ଶ୍ୟାମଳ ରକ୍ତରେ
ଶବ୍ଦ ଆଉ ନିଃଶବ୍ଦ ମଝିରେ
ତ୍ରିକାଳକୁ ଲେଖି ରଖୁଚି ।

◻◻◻

# ଘଟ ଭିତରେ

କି' ଅଣିମା ଅଷ୍ଟନିଧି ରଖିଦେଲଯେ
ଛାତିରେ କି ତାତିରେ
ରକ୍ତରେ କି ମେଦରେ
ମନରେ କି ଚେତନାରେ
କେହି ତାକୁ ଚିହ୍ନିଲେ ନାହିଁ-

ଲୋଡ଼ିଲେ ନାହିଁ
ସ୍ୱଚ୍ଛ ସୁନ୍ଦର ସେ ରତ୍ନକୁ
କେହି ବୋଲି କେହି ।

ରଖିଲା ବେଳେ
କେଉଁ ନକ୍ଷତ୍ର ରାଜତ୍ୱ କରୁଥିଲା
କେଉଁ ଲଗ୍ନରେ ?
ଶନି କ'ଣ ଜଗିବସିଥିଲେ ଚନ୍ଦ୍ରଙ୍କୁ
ବିଧାତା ଅନ୍ୟମନସ୍କ ଥିଲେ ?

ପ୍ରବଣ ଅଶୁଦ୍ଧ ଥିଲା ନିଶ୍ଚେ
ଭିତ୍ତିରେ ଥିଲା ବାସ୍ତୁ-ବିରୋଧ
ବୋଧେ ରଖିଦେଲ ଭୁଲରେ
ଗର୍ହିତ କିଛି ।
ମହାକୃପଣ,
ତୁମେ ବା କେବେ ନିଜେ ଚିହ୍ନିଲ ତାକୁ
ଭଲପାଇଲ ?



## ଗୁଡ଼ି

ପାଣି ଫୋଟକାକୁ
ଭାବିଲି ତୁମ ବିହ୍ୱଳ ଆଖି
ଇନ୍ଦ୍ରଧନୁକୁ ବିସ୍ତାରିତ କୋଳ ତୁମର
ଝଡ଼କୁ ଭାବିଲି ତୁମ ଦୁର୍ଦ୍ଦାନ୍ତ ଆବେଗ
ଦରସ୍ଫୁଟ ଆଳାପ, ଲାଗିଲା
ପାହାନ୍ତାରେ
ପତ୍ରରୁ ଝଡ଼ୁଥିବା କାକର ।

ଆଖିରେ ଆଖି ଯୋଡ଼ନ୍ତି
ଆଖି କାହିଁ ?
ଆଉଜି ପଡ଼ିଲେ ଯେ
ଉଭାନ୍ ହୋଇଗଲା କୋଳ
କୋଉଠି ହୃଦୟ, ଆବେଗ ବି କାହିଁ ?

ଅନ୍ତର୍ହିତ ପ୍ରଚଣ୍ଡ ଝଡ଼
ଛିନ୍‌ଛତ୍ର ସଂସାର
ଆଳାପରୁ ଖସୁଥିଲା ଖାଲି
ରଡ଼ ରଡ଼ ଖରା, ନିଆଁ ଝୁଲ ।

ମୋ ଭିତରୁ
ସାମ୍ନାକୁ ଭିଡ଼ିଆଣିଲି
ସେ ବାଳିକାକୁ
'ବନ୍ଦ କର୍ ଯେ ନିର୍ବୋଧ ଖେଳ
ଭ୍ରାନ୍ତ ଅବା ପ୍ରତାରିତ ତୁ ?'
ଅପୂର୍ବ ହସରେ ଫାଟି ପଡ଼ିଲା ସେ,
'ଧର, ଧରିରଖ ଗ୍ଲାନିକୁ ତୁମର,
ହାତ ମୁଠାରେ-
ମତେ କିନ୍ତୁ ଛାଡିଦିଅ, ପ୍ଲିଜ୍,
ଗୁଡ଼ି ପରି ଆକାଶ ଆଡ଼େ-

❑❑❑

# ଛି' ଛି' ମୋର ସ୍ଥିତି

ତୋତେ ଦେଖିଲେ
ତୁଚ୍ଛ ଲାଗେ ନିଜକୁ ।

ଲାଗେ, ପିମ୍ପୁଡ଼ିଟେ, କୀଟଟେ
କି ଧୂଳି କଣିକାଟେ
ଛି' ଛି'
ମୋର ସ୍ଥିତି କାହିଁ !

ମୁଁ ଯେ ବାକ୍‌ଚାତୁରୀ ଦେଖାଏ
'ମୁଁ ପଣ'ରେ
ବ୍ୟକ୍ତି ସତ୍ତାର ପ୍ରତିଷ୍ଠାରେ ଫାଟିପଡ଼େ
ମତେ ଲାଜ ନାହିଁ !

ତୋତେ ଦେଖିଲେ
ଆଦିଅନ୍ତ ନଥିବା ଏକ ବିସ୍ତାର
ନୂଆଚିହ୍ନା ଗୋଟେ ନକ୍ଷତ୍ର
ମହାସର୍ଜନାର କାରିଗରୀ
ପ୍ରତୀକ ହୋଇ
ଉଙ୍କି ଆସେ ଭିତରେ ।

ମୋ ଭିତରେ
ଆଙ୍ଗୁଳେ ଜାଗାରେ
ହିମାଳୟ ମାଳମାଳ ବ୍ୟାପିଥାଏ
କାଲିଫର୍ଣ୍ଣିଆର
ଝଲମଲ ସଂଜବେଳ ଝୁଲିରହେ
ଦିଗନ୍ତର ଲଜ୍ଜାରୁଣ କପାଳ
ଝାଳେଇ ଯାଏ

ଅମରତ୍ୱ ଜାହିର୍ କରେ ନିଜକୁ
ଭଂଗୁର ମାଂସଳ ଭୂମି ଉପରେ ।

ଇନ୍ଦ୍ରଧନୁ ପରି, ଛାଇ ପରି ଅସତ୍ୟ
ମୋର ଯେ ଛାତି ଭିତରେ
ଚନ୍ଦ୍ର ସୂର୍ଯ୍ୟଙ୍କ ପାଦପଡ଼େ କେମିତି !
ଛି' ଛି' ମୋର ସ୍ଥିତି !



## ଘୋଡ଼ା

ସେ କେମିତି ଆସିବ ?
ଉଜ୍ଜ୍ୱଳ ଅଶ୍ୱପରି ନିର୍ଲିପ୍ତ,
ସମତାରେ ବିଶ୍ୱାସୀ-

ମୁଁ ତା' ପିଠିରେ ବସି
ଚାଲିଯିବି ।
ରାନ୍ଧୁ ରାନ୍ଧୁ କି
କବିତା ପଢୁ ପଢୁ
କି ଆନା, ଇନି, ଲିଟାଙ୍କ ସାଙ୍ଗେ
ଲୁଡୁ ଖେଳୁ ଖେଳୁ
କି ଆଉ ଯାହା କିଛି କରୁ କରୁ
ଆଗେଇ ଯିବି ତା' ଆଡ଼କୁ,
ଏମିତିକି
ତୁମ ସହ ତା' ପିଉ ପିଉ ବି
ତା' ଆଡ଼କୁ ଚାଲିଯିବି ।

ସେ ଯଦି ଆସିବ
ବନ୍ୟା ବାତ୍ୟା ବି ଘୁଂଚିଯିବେ
ତା' ଚଲାବାଟରୁ
ଅବଶ୍ୟ, ତା'ର ଆସିବାର ସମ୍ଭାବନା
ଆଦୌ ଅଛି କି ନାହିଁ
ତା' ବି ଗୋଟାଏ କଥା- ।

ମୁଁ ବେଳେବେଳେ ଭାବେ
ଉଜ୍ଜ୍ୱଳ, ନିର୍ଲେପରେ ସଜ୍ଜିତ ସେ
ଘୋଡ଼ାରେ ବସି

ଆରମ୍ଭ ଓ ଶେଷ ଭିତରେ
ଘୂରି ବୁଲିଲାବେଳେ, ମୁଁ,
ଗୋଟାଏ ଗୋଡ଼ ଘୋଡ଼ା ପେଟରେ
ଭୁଷିଥିବି ତ
ଆଉ ଗୋଟାଏ ଗୋଡ଼ରେ
ଛନ୍ଦି ପକାଇଥିବି
ବ୍ରହ୍ମାଣ୍ଡ ।

❑❑❑



'କହି ନହେଲେ' ପ୍ରତିଭା ଶତପଥୀଙ୍କ ଅମୃତସ୍ରାବୀ ଲେଖନୀର ସଦ୍ୟତମ ଫଳଶ୍ରୁତି ।

ପ୍ରତିଭାଙ୍କ ଗଦ୍ୟ ଛନ୍ଦରେ ମହୁମାଛିର ଗୁଣୁଗୁଣୁ ପରି ଲୁଚିଥାଏ ସଙ୍ଗୀତର ନାନା ଅଧରା ଛନ୍ଦ । ଚିତ୍ର ସହ ଏକାକାର ହୋଇଥାଏ ଧ୍ୱନି । ସ୍ୱର ପାଲଟିଥାଏ ନାଦ । ସାତତାଳ ପାଣି, ପାଣି ତଳେ ପଙ୍କ, ପଙ୍କ ତଳେ ଫରୁଆ ଓ ଫରୁଆ ଭିତରେ ଭଅଁର ପରି ସାଇତା କବିତାର ବିଶୁଦ୍ଧ ସ୍ପନ୍ଦନକୁ ନିଃଶବ୍ଦ ଅଭିସାର ପରି ଛୁଇଁଦିଅନ୍ତି କବି । ସମକାଳୀନ କାହାପରି ନୁହନ୍ତି, ଆରମ୍ଭରୁ ସେ ଖାସ୍ ନିଜ ପରି । କେବଳ ନିଜ ପରି ।

କବିତାରେ ଏତେ ସିଦ୍ଧିପରେ ସବୁ କାଳଜୟୀ କବିଙ୍କ ପରି ସେ ବି କହନ୍ତି, ' କହି ନହେଲେ/ କଥା ବୋଧେ ଅମର ହୋଇଯାଏ ।' ଯଦି, 'ଶାଶ୍ୱତ' ସୀମା ଭିତରେ ଧରାଦିଏ, ହୋଇଯାଏ କବିତା, ଯଦି ଧରା ନ ଦିଏ ? ଅଧରାପଣରେ କବିତାକୁ ଭେଟିବାକୁ ହେଲେ ପ୍ରତିଭାଙ୍କ 'କହି ନହେଲେ' ହୁଏ ପାଠକପାଇଁ ଏକ ବିରଳ ବିକଳ୍ପ, କେବେକେବେ ଏକମାତ୍ର ବିକଳ୍ପ ।

-ପ୍ରକାଶକ